କାନୀନ
(ନାଟକ)
ଲେଖକ: ରମେଶ ପ୍ରସାଦ ପାଣିଗ୍ରାହୀ
ପ୍ରଥମ ସଂସ୍କରଣ: ୨୦୨୦
ପ୍ରକାଶକ: ଲେଖାଲେଖି, ବି.ଏଲ୍-୮, ଭି.ଏସ୍.ଏସ୍ ନଗର, ଭୁବନେଶ୍ୱର-୭୫୧୦୦୭
ଫୋନ୍: ୯୯୩୭୪୭୬୧୭୩, ୯୪୩୭୧୭୨୦୩୨
ପ୍ରଚ୍ଛଦ: ପିକେ ଗ୍ରାଫିକ୍ସ
ମୂଲ୍ୟ: ୧୦୦ ଟଙ୍କା

KANEENA
(Play)
Writer: Ramesh Prasad Panigrahi
1st Edition: 2020
Publisher: Lekhalekhi, B.L-8, V.S.S Nagar, Bhubaneswar-751007
Phone: 9937476173, 9437172032
Cover Design: PK Graphics
Price: ₹ 100/-

# ମାର୍ଗ ଦର୍ଶିକା

(କ)

ଓଡ଼ିଶୀ ପଣ୍ଡିତମାନେ "ପୌରାଣିକ ନାଟକ" କହିଲେ ଯାହା ବୁଝନ୍ତି, ଏହି ନାଟକ ତାହା ନୁହେଁ । ମହାଭାରତର କାହାଣୀ ଖଣି ଭିତରୁ କେତେକ ଆଖ୍ୟାନ ଓ ଉପାଖ୍ୟାନ ସଂଗ୍ରହ କରି ସେଗୁଡ଼ିକର ପୁନଃନିର୍ମାଣ କରିବା ଥିଲା ମୋର ଉଦ୍ଦେଶ୍ୟ । ଦ୍ୱାପର ଯୁଗର ସାମାଜିକ-ରାଜନୈତିକ ଶୃଙ୍ଖଳାଗୁଡ଼ିକୁ ହସ୍ତିନାର ରାଣୀ କୁନ୍ତୀଙ୍କ ଅନୁଭବରୁ ଏଠାରେ ତୁଳନାତ୍ମକ ଭାବରେ ପରୀକ୍ଷା କରାଯାଇଛି । ଏଣୁ ଏହାର କାହାଣୀକୁ ପୌରାଣିକ ନ କହି ଏକ ପ୍ରତ୍ନତାତ୍ତ୍ୱିକ ଐତିହାସିକ (ଖ୍ରୀଷ୍ଟପୂର୍ବ ୧୦୦୦ ମସିହା ବେଳର) ନାଟ୍ୟାୟନ ବୋଲି କୁହାଯାଇ ପାରେ । ଯେଉଁ ଆଖ୍ୟାନ-ଅଣୁ ଗୁଡ଼ିକରେ ଆଧିଭୌତିକ ଓ ଅତିବାସ୍ତବ ତତ୍ତ୍ୱ ଉପଲବ୍ଧ ହେଉଛି, ସେଗୁଡ଼ିକୁ ଦ୍ୱାପର ଯୁଗର ସଂସ୍କୃତି ବୋଲି ଗ୍ରହଣ କରିବା ପାଇଁ ଅନୁରୋଧ ।

ନାଟକର ମୁଖ୍ୟ ପ୍ରସଙ୍ଗ କାନୀନ (ଅବିବାହିତା ମାତାର ସଂତାନ) ହୋଇଥିବାରୁ ପୁରାଣକଳ୍ପଟି କର୍ଣ୍ଣଙ୍କୁ କେନ୍ଦ୍ରକରି ଗଠିତ ବୋଲି କୁହାଯାଇପାରେ । କିନ୍ତୁ କାନୀନ ସଂତାନ ଜନ୍ମ ଦେଇଥିବା କୁମାରୀ ମାତା କୁନ୍ତୀ ମଧ୍ୟ ଏ ନାଟକର କେନ୍ଦ୍ର । କୁମାରୀ ମାତା ରୂପରେ ଦ୍ୱାପରର ସାମାଜିକ ମୂଲ୍ୟବୋଧ ତାଙ୍କୁ ପାପିନୀ, ନିଃସଂଗ ଓ କଳଂକିନୀ ବୋଲି ମନେକରିଛି । ଅଥଚ ବିତିଯାଇଥିବା ସଂହିତା ଓ ସତ୍ୟ ଯୁଗରେ ଅର୍ଥାତ୍ ମାତୃକୈନ୍ଦ୍ରିକ ସମାଜରେ କୁମାରୀଟିଏ ତାର ମନଇଚ୍ଛା ମୁତାବକ ପୁରୁଷ ସଂଗ କରି ପାରୁଥିଲା । ତ୍ରେତୟାରେ ହିଁ ସ୍ୱାମୀ ଦେବତା ରୂପ ଧାରଣ କଲେ । ଦ୍ୱାପର ବେଳକୁ କୁମାରୀ ମାତା ଅସତୀ ।

ଭାରତୀୟ ସାଂସ୍କୃତିକ ଇତିହାସର ଏହି ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନ ଓ ନାଟ୍ୟାୟନ କାଳରେ ମୁଁ ବହୁ ଅନୁତ୍ତରିତ ପ୍ରଶ୍ନମାନଙ୍କୁ ଭେଟିଛି ଏବଂ ନାଟ୍ୟାୟନ ଶବ୍ଦାଶ୍ରିତ ଓ ବର୍ଣ୍ଣନାତ୍ମକ ହୋଇ ନଥିବାରୁ ବହୁ ସଂତର୍ପଣରେ ମୁଁ ସେଇ ରୂପକାତ୍ମକ ରହସ୍ୟଗୁଡ଼ିକର ସଂଶ୍ଲେଷଣ ଖୋଜିଛି । ସମକାଳୀନ ସତ୍ୟର ଅବତାରଣା ଘଟାଇ ଓ ପୁରା କଳ୍ପିକ କଳ୍ପନାଗୁଡ଼ିକୁ ନାନ୍ଦନିକ ଅଭିବ୍ୟକ୍ତି ମାଧ୍ୟମରେ ସଂପୁଟିତ କରି ଭାରତୀୟ ସଂସ୍କୃତିର ଏକ ପ୍ରତିରୂପ ନିର୍ମାଣ କରିଛି । ଅର୍ଥାତ୍ ଏହାର ମୁଖ୍ୟ ଚରିତ୍ର କୁନ୍ତୀ ଆଧୁନିକ ସମାଜର କେବଳ ଏକ ପ୍ରତୀକ ନୁହନ୍ତି, ରୂପକ ମଧ୍ୟ । ଅଦୃଶ୍ୟକୁ ଦୃଶ୍ୟାୟିତ କରୁ କରୁ ଅପ୍ରକାଶ୍ୟକୁ ପ୍ରକଟ କରିବା ମୋର ଉଦ୍ଦେଶ୍ୟ ।

(ଖ)

କୁନ୍ତୀ ସଂପର୍କରେ ଜାଣିବାପାଇଁ ମୁଁ ମୋର ବନ୍ଧୁମାନଙ୍କ ସାହାଯ୍ୟ ନେଇ ଭାରତର ବିଭିନ୍ନ 'ମହାଭାରତ' ପଢ଼ିଲି । କେବଳ ସାରଳା ମହା ଭାରତ ପଢ଼ିଲି ନାହିଁ । ଆମ ଦକ୍ଷିଣ ଓଡିଶାରେ କେହି ସାରଳା ମହାଭାରତକୁ 'ମହାଭାରତ' ବୋଲି ଭାବନ୍ତି ନାହିଁ । ଅନେକ ଦିନ ତଳେ ଗୋପୀନାଥ ନନ୍ଦ ଲେଖିଥିଲେ ଏହା "କୁସଙ୍ଗ ଓ ଦୁର୍ବୀର୍ଯ୍ୟର ଫଳ" । କିନ୍ତୁ ସଂସ୍କୃତ ମହାଭାରତର ଓଡିଆ ଅନୁବାଦ କରିବାକୁ କେହି ସମୟ ଦେଲେ ନାହିଁ । ଶେଷରେ ଧରାକୋଟଗଡ଼ର ରାଜା କୃଷ୍ଣ ସିଂହ ( ୧୭୨୯

ଖ୍ରୀଷ୍ଟାବ୍ଦ ଫାଲଗୁନ ଶୁକ୍ଳ ଦଶମୀରେ ଜନ୍ମ ଏବଂ ୧୭୮୮ ଖ୍ରୀଷ୍ଟାବ୍ଦ ବୈଶାଖ ଶୁକ୍ଳ ପଞ୍ଚମୀରେ ମୃତ୍ୟୁ) ବ୍ୟାସଦେବଙ୍କ ମହାଭାରତର ତେର ଅକ୍ଷରୀ ଆକ୍ଷରିକ ଅନୁବାଦ କରିଥିଲେ ଅଷ୍ଟାଦଶ ଶତାବ୍ଦୀରେ ସେତିକିରେ ମୋର ଉକ୍ତ ସନ୍ଧାନ ଶେଷ ହେଲା ନାହିଁ । ମୁଁ କୁନ୍ତୀଙ୍କ ସଂପର୍କରେ ଲେଖା ଯାଇଥିବା କିଛି ସାହିତ୍ୟ କୃତି ମଧ ପଢ଼ିଲି । ତା' ଭିତରୁ ପ୍ରଫେସର ସଂଘମିତ୍ରା ମିଶ୍ର ଦେଇଥିବା 'ଯୁଗାନ୍ତ' ଗ୍ରନ୍ଥଟି ଶ୍ରେଷ୍ଠତମ । ଏ ନାଟକର ଅଧିକାଂଶ ଶ୍ରେୟ ତାଙ୍କ ପାଖକୁ ଯିବ ।

କୁନ୍ତୀଙ୍କ ସଂପର୍କରେ ମୁଁ ଯେତିକି ବେଶୀ ପଢ଼ିଲି, ସେତିକି ସେ ଅଧିକ ଅଧିକ ପରିଚିତା ମନେ ହେଲେ । ତାଙ୍କର ତିନୋଟି ପୁତ୍ରଙ୍କର ଆଲୌକିକ ଜନ୍ମର କଥନିକାରେ ଯେଉଁ ରହସ୍ୟ ନିହିତ ଅଛି, ତାହା ମଧ୍ୟ ଅଲୌକିକ ବୋଲି ବିଚାର କରାଯିବା ଅନାବଶ୍ୟକ ।

ବଙ୍ଗଳା ଔପନ୍ୟାସିକ ସ୍ୱର୍ଗତ ସମରେଶ ବସୁଙ୍କର ଛଦ୍ମନାମ କାଳକୂଟଙ୍କ ଦ୍ୱାରା ଲିଖିତ 'ପୃଥା' ନାମକ ଗ୍ରନ୍ଥ ପାଠ କଲାପରେ ଜଣାଗଲା, ତାହା ଉପନ୍ୟାସ ନୁହେଁ । ଉପନ୍ୟାସର ଛଦ୍ମଖୋଳ ଭିତରେ ଗୋଟିଏ ପ୍ରବନ୍ଧ । ପ୍ରବନ୍ଧର ଏହି ଶୈଳୀଟି ସେ ଇରାବତୀ କାର୍ଭେଙ୍କର 'ଯୁଗାନ୍ତ' ଗ୍ରନ୍ଥ ପାଠ କଲା ପରେ ପାଇଛନ୍ତି । ମୁଁ 'ଯୁଗାନ୍ତ' ଏବଂ 'ପୃଥା' ଦୁଇଟି ଗ୍ରନ୍ଥ ପାଠ କଲା ପରେ ମୋର ମନେହେଲା ମୋର କୁନ୍ତୀ ଏକବିଂଶ ଶତାବ୍ଦୀର ଜଣେ ଚତୁର ଓ ଜାଗ୍ରତ ନାରୀ । ଆଦୌ ପୌରାଣିକ ଚରିତ୍ର ନୁହନ୍ତି । ପ୍ରଥମେ ଦେଖିଛି ତାଙ୍କର ଛୋଟ ବେଳର ବିବିକ୍ତ ଜୀବନ । ରାଜା ଶୂରସେନ ତାଙ୍କୁ ଦାନ ସୂତ୍ରରେ ଦେଇଦେଲେ ବନ୍ଧୁ ଓ ପିଇସୀ ପୁଅ ଭାଇ କୁନ୍ତଭୋଜଙ୍କୁ । ଯଦୁ ବଂଶରୁ ସେ ଆସିଲେ ଭୋଜବଂଶକୁ । ସେଇଠି ବିଦ୍ୟାଗ୍ରହଣର କୌଣସି ସୁବିଧା ନଥିଲା । ଜୈବିକ ପିତା ମାତାଙ୍କ ଠାରୁ ବିଚ୍ଛିନ୍ନ ହୋଇ ଏଇ ଅନିନ୍ଦ୍ୟ ସୁନ୍ଦରୀ ବାଳିକାଟି ତାର ଏକାକୀତ୍ୱ ଭିତରେ ଅନ୍ତର୍ମୁଖୀ ହୋଇ ପଡୁଥିଲା ବେଳେ ନୂତନ ପିତା କୁନ୍ତଭୋଜଙ୍କ ରାଜପ୍ରାସାଦକୁ ଋଷି ଦୁର୍ବାସା ଆସିଥିଲେ । ତାଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା । ସେ ରାଜା କୁନ୍ତଭୋଜଙ୍କୁ ଦୀକ୍ଷା ଦେବେ । ଦ୍ୱିତୀୟତଃ ଏଇ ସୁନ୍ଦରୀ ଦତ୍ତ କନ୍ୟାଟିର ସେବା ପାଇବେ । ସେଠାରେ ଏକ ବର୍ଷ ଡ଼େରା ପକାଇଲେ । ଏହି ଆଗନ୍ତୁକ ଅତିଥିଙ୍କ ପାଖରୁ ଶିକ୍ଷା ଲାଭ କରିବାର ସୌଭାଗ୍ୟ ମିଳିଥିବାରୁ କୁନ୍ତୀ ଅତି ଆନନ୍ଦରେ ତାଙ୍କର ସେବା କରିବା ପାଇଁ କୁନ୍ତଭୋଜଙ୍କୁ ପ୍ରତିଶୃତି ଦେଲେ ।

ରାଜ ପ୍ରାସାଦ ଠାରୁ କିଛି ଦୂରରେ କୁନ୍ତଭୋଜଙ୍କର ଏକ ସୁଧା ଧବଳ ଅତିଥିଶାଳା ଥିଲା । ସେଇଠି ଦୁର୍ବାସାଙ୍କୁ ଅବସ୍ଥାପିତ କରାଗଲା । ଏହି ଅତ୍ୟନ୍ତ କ୍ରୋଧୀ ରୂପରେ ପରିଚିତ ମଧବୟସ୍କ ଏବଂ ତେଜୋଦୀପ୍ତ ବ୍ରାହ୍ମଣ କୁନ୍ତୀଙ୍କ ଠାରୁ କେଉଁ ପ୍ରକାର ସେବା ପାଇଲେ ବୋଲି ପ୍ରସନ୍ନ ହେଲେ ତାହାର ସ୍ପଷ୍ଟ ଚିତ୍ର ଉପଲବ୍ଧ ନୁହେ ।

ଏହା କାବ୍ୟ କିମ୍ବା ଉପନ୍ୟାସ ନୁହେ ଯେ ବର୍ଣ୍ଣନା କରିଦେବି । ମତେ ଏହି ଦୃଶ୍ୟଟିକୁ ଦେଖାଇବାକୁ ପଡିବ ।

'ମହାଭାରତ'ର କଥାକଳ୍ପ ଭିତରେ କୌଣସି ଜାଗତିକ ଏବଂ ପାଶବିକ ଯୌନତାର ସଂଦେହ ରଖା ଯାଇ ପାରିବ ନାହିଁ । କାରଣ 'ମହାଭାରତ' କେବଳ ଗୋଟିଏ କାହାଣୀ ନୁହେଁ । ଏହା ଏକ ଲୋକ ପାବନ ପବିତ୍ର ଇତିହାସ । ଏଥିରେ ଶ୍ରୁତି, ସ୍ମୃତି ଏବଂ ଉପନିଷଦର ସାରକଥା

ରହିଛି । ଉଗ୍ରଶ୍ରବାଙ୍କ ମତରେ "ହେ ବିପ୍ର ବୃନ୍ଦ ! ଏହି ଦିବ୍ୟଗ୍ରନ୍ଥ ଅଜ୍ଞାନ ରୂପୀ ଅନ୍ଧକାରକୁ ନାଶ କରିଦେଇଥାଏ ।

ଅଜ୍ଞାନ ତିମିରାନ୍ଧସ୍ୟ ଲୋକସ୍ୟ ତୁ ବିଚେଷ୍ଟତଃ
ଜ୍ଞାନାଞ୍ଜନ ଶଳାକାଭି ର୍ନେତ୍ରୋନ୍ମୀଳନ କାରକମ୍ ।

ଭାରତର ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଲିଖିତ ମହାଭାରତରେ ମୂଳ ମହାଭାରତ ଠାରୁ ଅଲଗା ମତ ଓ ବର୍ଣ୍ଣନା ମଧ ଦିଆ ଯାଇଛି । ଉଦାହରଣସ୍ୱରୂପ, କୁମାରୀ ରାଜଜେମା କୁନ୍ତୀ କର୍ଣ୍ଣଙ୍କୁ କାନବାଟେ ଜନ୍ମ ଦେଇଥିବାରୁ, ଅର୍ଥାତ ଅଯୋନୀ ସଂଭୂତା ହୋଇଥିବାରୁ, ସେ କୁମାରୀ ଅବସ୍ଥାରେ ପୁତ୍ର ଜନ୍ମ କରି ମଧ୍ୟ ସତୀ ରୂପରେ ପରିଗଣିତା ହେଲେ । ଅନେକ ପାଠକ ପ୍ରଶ୍ନ କରିଛନ୍ତି ଦୁର୍ବାସା ଏକ ନିର୍ଜନ ଅତିଥିଶାଳାରେ ପୃଥାଙ୍କଠାରୁ ଯେଉଁ ସେବା ପାଇ ପ୍ରସନ୍ନ ହୋଇଥିଲେ, ସେଇ ସେବାର ସୀମା କେଉଁ ପର୍ଯ୍ୟନ୍ତ ? ଦୁର୍ବାସା ଏକ ବର୍ଷଧରି ସେଇ ଅତିଥିଶାଳାରେ ଥିଲେ । ଆଦ୍ୟ ଯୌବନା କୁନ୍ତୀ ଋଷିଙ୍କର କି ସେବା କରିଥିବେ ? ଇରାବତୀ କାର୍ଭେଙ୍କର ମତ ଦେଖନ୍ତୁ:

"ଆମ୍ଭେମାନେ କଣ ଏଇ କଥାଟିକୁ ବିଶ୍ୱାସ କରିପାରିବା ? କୁନ୍ତୀ ଋଷିଙ୍କର ସେବା କରିଥିଲେ । ସେବାର ଅର୍ଥକଣ ? ଏହି ସେବାରେ ଦର୍ଶନୀୟ ଫଳ କଣ କର୍ଣ୍ଣ ? ଯଦି ତା ହୁଏ କୁନ୍ତୀଙ୍କ ସାଂଗରେ ସୂର୍ଯ୍ୟଙ୍କ ସମ୍ବନ୍ଧ କେମିତି ଭାବରେ ପ୍ରଯୁଜ୍ୟ ?" (ଯୁଗାନ୍ତ ପୃ-୨୬)

କୁନ୍ତୀଙ୍କୁ ନେଇ କବିତା, ପ୍ରବନ୍ଧ ଓ ଉପନ୍ୟାସ ଲେଖିବା ସହଜ ମନେ ହୋଇପାରେ । ନାଟକରେ ଦୃଶ୍ୟ ମାଧମରେ ସବୁ ଦେଖାଇବାକୁ ପଡିବ । ତେଣୁ କୁନ୍ତୀ ଚରିତ୍ର ଏଠାରେ ତାଙ୍କର ଦୈବୀ ସଂପର୍କଗୁଡ଼ିକ ତ୍ୟାଗକରି ସାଧାରଣ ମା କିମ୍ବା ଏକବିଂଶ ଶତାବ୍ଦୀର ଝିଅଟିଏ ପରି । କାନୀନ ସନ୍ତାନର ମା' ପରି ଅଭିନୟ କରିବାକୁ ପଡିବ । ସେ କାହାକୁ କହି ପାରିବ ନାହି - ଛୁଆଟା କାନ ବାଟେ ଦେଇ, ଅତି କ୍ଷୁଦ୍ର ପିମ୍ପୁଡି ପରି ଜନ୍ମ ହୋଇଗଲା ଏବଂ ପବନ ବାଜିଲା ପରେ ଫୁଲିଯାଇ ୩/୪ ପାଉଣ୍ଡର ଛୁଆରେ ପରିଣତ ହୋଇଗଲା । ଶବ୍ଦ ଦ୍ୱାରା ନିର୍ମିତ ସାହିତ୍ୟରେ କଥାକୁ ରୂପକଳ୍ପ ମାଧମରେ କୁହାଯାଇ ପାରେ । ଦୃଶ୍ୟ ଦ୍ୱାରା ନିର୍ମିତ ସାହିତ୍ୟରେ ତାହା ଅସମ୍ଭବ ।

ଏହାର ଅର୍ଥନୁହେଁ ଯେ 'କୁନ୍ତୀ' ଚରିତ୍ର ପାଇଁ ମୁଁ ସବୁବେଳେ ପ୍ରକୃତିବାଦୀ ନାଟକର ଶୈଳୀ ପ୍ରୟୋଗ କରିବି । ପଦ୍ୟ ନାଟକ ଲେଖିବା ପାଇଁ ସାହସ ନଥିବାରୁ କୌଣସି କୌଣସି ସ୍ଥାନରେ ମୁଁ ସଂଳାପକୁ ପଦ୍ୟଧର୍ମୀ କରିବାକୁ ଚେଷ୍ଟା କରିଛି । ସେଇଠି କଥୋପକଥନର ପ୍ରକୃତିବାଦୀ ପରିବେଷଣକୁ ପରିହାର କରି ଆବୃତ୍ତି ଧର୍ମୀ ଶବ୍ଦ ପ୍ରୟୋଗର ଆବଶ୍ୟକତା ଅନୁଭୂତ ହେଉଛି, ତାହା ସ୍ୱାଭାବବାଦୀ/ପ୍ରକୃତିବାଦୀ ପ୍ରକ୍ଷେପଣର ଓଲଟା; କେବଳ ଧ୍ୱନ୍ୟାତ୍ମକ ।

ଏହି ଧ୍ୱନିଗୁଡିକର ନାଟକୀୟ ଦୃଶ୍ୟାୟନ କରିବା ପାଇଁ ମୁଁ ସୂତ୍ରଧର ପାଞ୍ଚଜଣଙ୍କର ସାହାଯ୍ୟ ନେଇଛି । ଏହାଦ୍ୱାରା ପରିବେଷଣ କଳାରେ ଅନ୍ତର୍ନିହିତ ଥିବା ବର୍ଣ୍ଣନା ସମ୍ଭବ ହେଉଛି । ନାଟ୍ୟ ମଞ୍ଚନ ଦ୍ୱଂଦ୍ୱାତ୍ମକତାର ବନ୍ଧନ ଭିତରୁ ମୁକ୍ତ ହୋଇ ଏକ ସହଜ ବର୍ଣ୍ଣନାଶୈଳୀ ଦ୍ୱାରା ଆତ୍ମପ୍ରକାଶ କରୁଛି । ନାଟକର କଥାବସ୍ତୁ ସହ ଦର୍ଶକ ମାନଙ୍କର ପରିଚୟ ମଧ୍ୟ ସହଜ ହେଉଛି । କୁନ୍ତୀ ଚରିତ୍ରକୁ ପୌରାଣିକ ଅତି କଳ୍ପନାର ଅଟୋପ ଭିତରୁ ମୁକ୍ତ କରି ତାଙ୍କୁ ଏକ ଏକବିଂଶ ଶତାବ୍ଦୀର ବଡ଼

ପରିବାରର ବୋହୂ ରୂପେ ଚିତ୍ରଣ କରାଯାଇଛି ।

କୁମାରୀ ଅବସ୍ଥାରେ ମାତା ହେବାର ଯନ୍ତଣା ଦ୍ୱାପର ଯୁଗର ପୁରୁଷ ପରିଚାଳିତ ସମାଜରେ ଏକ ପାପ ଓ ଲଜ୍ଜା ବୋଲି କଥିତହେବା ଆଶଂକାରେ ସୂର୍ଯ୍ୟଙ୍କ ଦ୍ୱାରା ଜନ୍ମିତ ପୁତ୍ରକୁ ଅଶ୍ୱନଦୀରେ ଭସାଇ ଦିଆଗଲା ସତ, କିନ୍ତୁ କୁମାରୀ ଅବସ୍ଥାରୁ ଯୌନ ସଂଗମର ସୁଖ ପାଇଥିବା ରାଜକୁମାରୀଟି ସ୍ୱୟଂବର ସଭାରେ ଯେଉଁ ପାଣ୍ଡୁଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଆକର୍ଷିତ ହୋଇ ବରଣମାଳା ଦେଇଥିଲେ ସେ ଯେ ଏକ ସାଂଘାତିକ ଯୌନବ୍ୟାଧିରେ ପ୍ରପୀଡ଼ିତ ଏ କଥା କୁନ୍ତୀ ଜାଣି ନଥିଲେ ପରେ ଜାଣିଲେ ଯେ ପତ୍ନୀ ସହ ସଂଗମ କଲେ ପାଣ୍ଡୁ ତତ୍କ୍ଷଣାତ ମୃତ୍ୟୁମୁଖରେ ପଡିବେ । କୁନ୍ତୀ ଏ ଦୁଃଖକୁ ଆତ୍ମସ୍ଥ କରି ବ୍ରହ୍ମଚର୍ଯ୍ୟ ରକ୍ଷା କରି ଚଳିଲା ସମୟରେ ଭୀଷ୍ମ ମଦ୍ର ଦେଶ ଆକ୍ରମଣ କରି ରାଜା ଶଲ୍ୟଙ୍କ ଭଉଣୀ ମାଦ୍ରୀଙ୍କୁ ଉଠାଇ ଆଣିଲେ ଏବଂ ପାଣ୍ଡୁଙ୍କ ସହ ବିବାହ ଦେଲେ । ସେ ପାଣ୍ଡୁଙ୍କ ବ୍ୟାଧି ସଂପର୍କରେ ଜାଣି ସୁଦ୍ଧା ନିଜକୁ ଆୟତ୍ତରେ ରଖି ନ ପାରି ପାଣ୍ଡୁଙ୍କ ସହ ମିଳିତ ହେବାରୁ ପାଣ୍ଡୁ ତତ୍କ୍ଷଣାତ ପ୍ରାଣତ୍ୟାଗ କଲେ ଓ ମାଦ୍ରୀ ସତୀ ହୋଇଗଲେ ।

କୁନ୍ତୀ ଏହା ପୂର୍ବରୁ ପାଣ୍ଡୁଙ୍କ ଅନୁରୋଧ ରକ୍ଷା କରି ତିନୋଟି ପୁତ୍ର – ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କର ଜନନୀ ହୋଇଥିଲେ ଏବଂ ମାଦ୍ରୀଙ୍କ ସତୀ ହେବାପରେ ତାଙ୍କର ଯାଆଁଳା ପୁତ୍ର ନକୁଳ ଓ ସହଦେବଙ୍କୁ ଧରି ହସ୍ତିନା ଫେରିଥିଲେ । ପୁଅମାନଙ୍କ ବିଦ୍ୟା ଓ ଅସ୍ତ୍ରଶିକ୍ଷା ଯେପରି ଉତ୍ତମ ହେବ, ତାହାର ଯତ୍ନ ନେଲେ । ଜଣେ ବିଧବା ଏବଂ ମାତାରୂପରେ ପ୍ରଚୁର ଆତ୍ମବିଶ୍ୱାସର ଅଧିକାରିଣୀ ବୋଲି ପ୍ରମାଣ ଦେଲେ । ଦୁଃଖକୁ ଜୀବନ ସାରା ଦୁଃଖ ବୋଲି ମନେ ନ କରି ଏହି ନାରୀ ନାୟକ ସମସ୍ତ ପ୍ରଥା ଓ ପରମ୍ପରାକୁ ଭାଙ୍ଗି ପାଞ୍ଚପୁଅକୁ ଦ୍ରୌପଦୀଙ୍କ ସହ ବିବାହ କରେଇ ଦେଇ ସେମାନଙ୍କ ମଧ୍ୟରେ ଏକତା ଓ ଭାତୃଭାବ ଅତୁଟ ରଖିଛନ୍ତି । କୁନ୍ତୀ ଏଠାରେ ଦୁଃଖୀ ନାୟିକା ନୁହନ୍ତି । ଆମେ ତାଙ୍କୁ ଚତୁରୀ, କୁଶଳୀ, କ୍ଷିପ୍ର ସିଦ୍ଧାନ୍ତ ନେଇଥିବା ପ୍ରଖର ପ୍ରତ୍ୟୁତ୍ପନ୍ନ ମତି ଥିବା ନାରୀ ରୂପରେ ଗ୍ରହଣ କରିପାରିବା ।

ସବୁଠୁ ବଡ଼ ତାଙ୍କର ଦୂରଦର୍ଶିତା ଓ ଭବିଷ୍ୟତକୁ ଚିହ୍ନିବାର କ୍ଷମତା । ଦୁର୍ବାସାଙ୍କ ମନ୍ତ୍ରର ସଦ୍‌ବ୍ୟବହାର କରି ସ୍ୱାମୀଙ୍କ ଅନୁମତି ନେଇ ସେ ହସ୍ତିନାର ଉତ୍ତରାଧିକାରୀ ମାନଙ୍କୁ ଜନ୍ମ ଦେଇଥିଲେ । ଯୁଦ୍ଧ ବେଳେ ପୁତ୍ରମାନଙ୍କୁ ଭର୍ତ୍ସନା କରି ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଉଦ୍‌ବୁଦ୍ଧ କରିଥିଲେ । ଜୀବନରେ ଯେପରି ଅଗ୍ରଣୀ, ଯୁଦ୍ଧରେ ବି ସେମିତି ପାଞ୍ଚ ପାଣ୍ଡବଙ୍କର ପ୍ରେରଣା ଥିଲେ ।

ଦୁଃଖର କଥା ଓଡିଶାରେ କୁନ୍ତୀଙ୍କ ସଂପର୍କରେ କୌଣସି ଗ୍ରନ୍ଥ ରଚିତ ହୋଇନାହିଁ । ଏହି ନାଟକ ଲେଖିଲା ବେଳେ ଅଂଧାରରେ ଥିବା କିଛି ପୃଷ୍ଠାକୁ, କିଛି ଘଟଣାକୁ ଓ ମାନସିକତାକୁ ମୋ ନିଜ ଢାଞ୍ଚାରେ ସଜାଇବାକୁ ପଡିଲା । ଏହା ଗୋଟିଏ କାଳଖଣ୍ଡର କେବଳ ଗୋଟିଏ ଇତିହାସ ନୁହେ, ଆଜିର ନାରୀ ପାଇଁ ଏକ ଦିଗବାରେଣୀ ।

– ରମେଶ ପ୍ରସାଦ ପାଣିଗ୍ରାହୀ

# ଦୃଶ୍ୟ – ୧

*ଅଭିନେତାମାନଙ୍କ ଦ୍ୱାରା ନିର୍ମିତ ଏକ ପ୍ରତୀକାତ୍ମକ ରଥରେ ଆସୁଛନ୍ତି ଶ୍ରୀକୃଷ୍ଣ । ଆସୁଛନ୍ତି ଦ୍ୱାରକାରୁ ହସ୍ତିନାପୁରକୁ । ମଂଚ ଉପରେ ଖଣ୍ଡାଯୁଦ୍ଧ କରୁଛନ୍ତି ପାଞ୍ଚ-ଛ' ଜଣ ଅଭିନେତା । ମଝିରେ ମଝିରେ ମଞ୍ଚ ଉପରେ ବଜ୍ରପାତ ହେଉଛି ଏବଂ ବିଜୁଳି ଚମକୁଛି । ତାହାହିଁ ମୁଖ୍ୟ ଆଲୋକ ସଂପାତ । ଖଣ୍ଡାଯୁଦ୍ଧ ପ୍ରବଳ ହେବ ଓ ଯୋଦ୍ଧାମାନେ ମଞ୍ଚ ଉପରେ ପଡି ଯିବେ । ହଠାତ୍ ମଞ୍ଚର ଗୋଟିଏ ଉଚ୍ଚ ସ୍ଥାନରେ ଆବିର୍ଭୂତା ହେଲେ ଗାନ୍ଧାରୀ । ତାଙ୍କ ପାଇଁ ସ୍ୱତନ୍ତ୍ର ଆଲୋକ ।*

ଗାନ୍ଧାରୀ: ମୁଁ ମହା ତପସ୍ୱୀ ରାଜା ସୁବଳଙ୍କ କନ୍ୟା ଗାନ୍ଧାରୀ... ମୁଁ ମହାଯୋଗିନୀ ଧୃତରାଷ୍ଟ୍ରପତ୍ନୀ ଗାନ୍ଧାରୀ... ମୁଁ ମହା ଅଭାଗିନୀ ପୁତ୍ରହୀନମାତା ଗାନ୍ଧାରୀ... ତୁମକୁ ଅଭିଶାପ ଦେଉଛି କୃଷ୍ଣ ! ସମଗ୍ର ଯଦୁବଂଶର ବିନାଶ ହେବ । ଯାଦବ ବଂଶର ବାଳକମାନଙ୍କର କ୍ରନ୍ଦନ ଶୁଣିବା ପାଇଁ ଦ୍ୱାରିକାରେ କେହି ନଥିବେ... ତମର ସୁବର୍ଣ୍ଣ ଛାଉଣୀ ପ୍ରସାଦ ଭିତରକୁ ସମୁଦ୍ର ମାଡି ଆସିବ । ଆଉ ତମେ... ଗୋଟେ ବୃଦ୍ଧ ପଶୁ ପରି ମରଣ ଦଣ୍ଡ ପାଇବ । ତମ ପାଇଁ ଲୁହ ଗଡେଇବା ପାଇଁ କେହି ନଥିବେ ଏ ଆର୍ଯ୍ୟାବର୍ତ୍ତରେ !

*(ତାଙ୍କ ଉପରୁ ଆଲୋକ ଲିଭିଗଲା । ମଞ୍ଚ ଉପରେ ପୁଣି ଥରେ ବିଜୁଳି ଚମକିଲା, ବଜ୍ରନାଦ ଶୁଭିଲା, ପୁଣିଥରେ ପ୍ରଜାମାନେ ପରସ୍ପରଙ୍କ ସହିତ ଯୁଦ୍ଧ କରି ମୃତାହତ ହେଲେ । ପୁଣିଥରେ ଆଲୋକ ସଂପାତିତ ହେଲା ଗାନ୍ଧାରୀଙ୍କ ଉପରେ । ଗାନ୍ଧାରୀ ଉଚ୍ଚସ୍ୱରରେ ବିଳାପ କରୁଥିଲେ ଏବଂ କିଛି ସମୟ ପରେ କହିଲେ ।)*

ଗାନ୍ଧାରୀ: କୃଷ୍ଣ ! ଗୋଟାଏ ପୁତ୍ରହୀନ ମାତାର ହାହାକାର ଭିତରୁ ଉଦ୍‌ଗତ ଏହି ଅଭିଶାପ କେବେ ନିଷ୍ଫଳ ହେବ ନାହିଁ । ତମର ସୁବର୍ଣ୍ଣ ନଗରୀ ଦ୍ୱାରିକା ଧ୍ୱଂସ ହୋଇଯିବ କୃଷ୍ଣ ! ଧ୍ୱଂସ ହୋଇଯିବ ତମର ଯଦୁବଂଶ ।

*(ବିଜୁଳି ଓ ଘଡଘଡି ମାରିଲା ଓ ଗାନ୍ଧାରୀଙ୍କ ଉପରୁ କଟିଗଲା ଆଲୋକ)*

କୃଷ୍ଣ: ମାତା ଗାନ୍ଧାରୀ ! ଆପଣ କିଛି ଅନୁଚିତ୍ କଥା କହି ନାହାନ୍ତି । ଆପଣଙ୍କ ମାତୃ ହୃଦୟର ପୀଡା ସ୍ୱାଭାବିକ । କିନ୍ତୁ ମାତା ! ଯୁଦ୍ଧ ବନ୍ଦ କରିବା ପାଇଁ ମୁଁ ବହୁତ ଚେଷ୍ଟା କରିଛି । ମୋ କଥା କେହି ଶୁଣିଲେ ନାହିଁ । ଯୁଦ୍ଧ ହେଲା ।

ଯେତେ ରକ୍ତ ବୋହିଲା ସବୁ ମୋର । ଯେତେ ମୃତ୍ୟୁ ହେଲା ସବୁ ମୃତ୍ୟୁ ମୋର । ମୁଁ ହିଁ ଆପଣଙ୍କ ଶତ୍ରୁ ମାତା ! ମିତ୍ର ମଧ ମୁଁ... ପୁତ୍ର ମଧ ମୁଁ ଦୁର୍ଯୋଧନର ଉରୁ ଭଙ୍ଗ ବେଳେ ତାର କରୁଣ ଚିତ୍କାର କୁରୁକ୍ଷେତ୍ରକୁ ଦୋହଲାଇ ଦେଇଥିଲା । ସେ ଆର୍ତ୍ତନାଦ ମୋର ଥିଲା । ଆପଣ  ମୋର ଦୁଃଖକୁ ବୁଝନ୍ତୁ ମାତା !

ଗାନ୍ଧାରୀ: କ୍ଷମା କରିବ କୃଷ୍ଣ ! ଶହେ ପୁତ୍ର ମୋର ମରିଗଲା ପରେ ଏ ଏକାକିନୀ ମାତାର ଦୁଃଖ ଯେତେବେଳେ ତରଳିଯାଇ ଲୁହ ହେଇଥିଲା, ସେତେବେଳେ ମୁଁ  ନିଜକୁ ସମ୍ଭାଳି ପାରିଲିନି ପୁତ୍ର ! ଅଭିଶାପ  ଦେଇଦେଲି ।

କୃଷ୍ଣ: ଏ ଅଭିଶାପ ନିଶ୍ଚୟ ଫଳିବ ମାତା... ଦ୍ୱାରିକା ନଗରୀ ମୋର ଧ୍ୱଂସ ହେବ । ଗତ ବର୍ଷ କୁମାରୋତ୍ସବ ପାଳନ ବେଳେ ଯଦୁବଂଶର ଉନ୍ମତ୍ତ ପ୍ରଜାମାନେ ସୋମରସ ପାନ କରି ପରସ୍ପରକୁ ହତ୍ୟାକଲେ । ତାପରେ ମୁଁ ଦେଖିଲି ଦ୍ୱାରିକାରେ  ମୂଷାମାନେ ହେଲେଣି ପ୍ରବଳ । ନିଦ୍ରିତ ଯାଦବ ମାନଙ୍କୁ ଟିକ୍‌ଟିକ୍ କରି ଖାଇଗଲେ । ଦ୍ୱାରିକାର ମେଣ୍ଢାମାନେ ଶୃଗାଳଙ୍କ  ପରି  ଡାକ  ଛାଡୁଛନ୍ତି । ଗୋମାତା ଜନ୍ମଦେଲେ ଗର୍ଦ୍ଦଭ ଶିଶୁଙ୍କୁ  । ଗଦର୍ଭ ବି ବିଡାଳ ମାନଙ୍କୁ  ।  ଏ ଅପଶକୁନ ଦେଖି ମୁଁ  ଯଦୁ ବଂଶର ବିନାଶ ହେଉ ବୋଲି ସୁଦର୍ଶନ ଚକ୍ରକୁ ପେଷଣ  କରିଥିଲି ।

ଗାନ୍ଧାରୀ: କୃଷ୍ଣ !

କୃଷ୍ଣ: ସୁଦର୍ଶନ ଚକ୍ର ହାତରୁ ଖସିଗଲା -  ଉଡିଗଲା  ସେଇ  ନୀଳ ଆକାଶକୁ... ଅଦୃଶ୍ୟ ହୋଇଗଲା...

*(ଗାନ୍ଧାରୀଙ୍କ ଉପରୁ ଆଲୋକ ନିର୍ବାପିତ ହେଲା ଏବଂ ଆଉ ଗୋଟେ ସ୍ଥାନରେ ଦେଖା ଦେଲେ ଋଷି ଉତଙ୍ଗ । ଶ୍ରୀକୃଷ୍ଣ ରଥକୁ ରଖିଲେ । ରଥ ଅଟକିଗଲା ।)*

କୃଷ୍ଣ: ସାରଥି  । ରଥ ରଖ । (ରଥ ଅଟକିଲା କୃଷ୍ଣ ଠିଆ ହୋଇ ଧ୍ୟାନରତ ଉତଙ୍ଗ ମୁନିକୁ ପ୍ରଣାମ କଲେ) ହେ ମୁନିଶ୍ରେଷ୍ଠ । ବିଶ୍ୱର କଲ୍ୟାଣ ପାଇଁ ଆପଣ ଯେଉଁ ତପସ୍ୟା କରୁଛନ୍ତି ସେଥିରେ ମୁଗ୍ଧ ହୋଇ ମୁଁ ଦେବକୀ ପୁତ୍ର କୃଷ୍ଣ ପ୍ରଣାମ ନିବେଦନ କରୁଛି ।

ଉତଙ୍ଗ: (ଧ୍ୟାନ ଚକ୍ଷୁ ଖୋଲି ସ୍ମିତ ହାସ୍ୟ ବଦନରେ) ହେ କେଶବ ! ଆପଣ ଯେ ଯିବା ବାଟରେ ମୋ  ତପୋବନ ନିକଟରେ ଅଟକିଲେ ଏବଂ ମତେ ସ୍ମରଣ କଲେ ସେଥିପାଇଁ ମୁଁ ଧନ୍ୟ । ଏ ନିକାଞ୍ଚନ ଆଶ୍ରମରେ ରହି ଶିଷ୍ୟ

ମାନଙ୍କ ଠାରୁ ଶୁଣିଥିଲି ହସ୍ତିନାରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହେବାର ସଂଭାବନା ଥିଲା । କିନ୍ତୁ ଆପଣଙ୍କ ମଧ୍ୟସ୍ଥତାରେ ଏବଂ ମଧୁର ସଂଭାଷଣରେ ସେମାନେ ସମ୍ମୋହିତ ହୋଇଗଲେ ଏବଂ ସେ ଯୁଦ୍ଧର ଅବସାନ ଘଟିଲା । ବର୍ତ୍ତମାନ ଆପଣଙ୍କ ସମ୍ମୋହନ ଶକ୍ତି ଦ୍ୱାରା ସେମାନଙ୍କ ମଧ୍ୟରେ ହେବାକୁ ଥିବା ଯୁଦ୍ଧ ଓ ସଂହାର ନିଶ୍ଚୟ ଟଳିଯାଇଥିବ । ଏହାହିଁ ମୁଁ ବିଶ୍ୱାସ କରୁଛି ।

ଶ୍ରୀକୃଷ୍ଣ: (ନୀରବ ରହିଲେ ଖାଲି ହସିଲେ ।)

ଉତ୍ତଙ୍କ: ପ୍ରଭୁ ! ନିରବ ରହିଲେ ଯେ କେଶବ ? ମୋ ପାଖରେ କୌଣସି ଖବର ନାହିଁ । କଣ ହେଲା ହସ୍ତୀନାପୁରରେ ? ଆପଣଙ୍କ ଶକ୍ତି ଓ ଚମତ୍କାରିତାର ସ୍ପର୍ଶ ପାଇ ସେମାନେ ଶାନ୍ତିରେ ଚଳୁ ନାହାନ୍ତି ? ମୁଁ ଭାବୁଛି ଆପଣଙ୍କ ଶକ୍ତି ଦ୍ୱାରା ହେବାକୁଥିବା ଅନର୍ଥର ଅନ୍ତ ଘଟିଥିବ ।

କୃଷ୍ଣ: ସେମାନେ ମୋର ଉପଦେଶର ସୀମା ଭିତରେ ଆବଦ୍ଧ ନଥିଲେ ମହର୍ଷି । କଥା ବହୁତ ଆଗକୁ ବଢ଼ିଯାଇଥିଲା ।

ଉତ୍ତଙ୍କ: ଆପଣ କଣ କହୁଛନ୍ତି କେଶବ ? ଯୁଦ୍ଧ ହେଲା ? ଆପଣ ଥାଉ ଥାଉ ଯୁଦ୍ଧରେ ଅଂକୁଶ ଲାଗି ପାରିଲା ନାହିଁ ?

କୃଷ୍ଣ: ନା ମହର୍ଷି ! ଯୁଦ୍ଧ ହେଲା । ସଂସାରର ସବୁଠାରୁ ଭୟଙ୍କର ଯୁଦ୍ଧ ହେଲା । ଆର୍ଯ୍ୟାବର୍ତ୍ତର ସବୁ ଯୋଦ୍ଧା ବୀରଗତି ପ୍ରାପ୍ତ ହେଲେ । ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ଶହେ ପୁଅଙ୍କର ମୃତ୍ୟୁ ହେଲା । ଯୁଦ୍ଧ ଶେଷ ହେଲା ବେଳକୁ କେବଳ ଦଶଜଣ ବଞ୍ଚିଲେ । ପାଣ୍ଡବଙ୍କର ପାଞ୍ଚପୁତ୍ର, ସାତ୍ୟକୀ, କୃତବର୍ମା, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଆଉ ମୁଁ ଏଇ ଦଶଜଣଙ୍କ ବ୍ୟତୀତ କୁରୁବଂଶର ସବୁଯୋଦ୍ଧା ବୀରଗତି ପ୍ରାପ୍ତ ହେଇଗଲେ ମହର୍ଷି ।

ଉତ୍ତଙ୍କ: (ଅତି କ୍ରୁଦ୍ଧ ସ୍ୱରରେ) କୁରୁବଂଶ ଧ୍ୱଂସ ହୋଇଗଲା ? ଆର୍ଯ୍ୟାବର୍ତ୍ତର ସବୁ ଯୋଦ୍ଧା ମୃତ ? କଥାଟା କିଛି ଭଲ ହେଲା ନାହିଁ କେଶବ ! ଯୁଦ୍ଧ ବନ୍ଦ କରିବାର ସମସ୍ତ ଶକ୍ତି ଥାଉଥାଉ ତମେ ଯୁଦ୍ଧ ପାଇଁ ଅନୁମତି ଦେଇ ଦେଲ ? କେମିତି ? ଏଇଟା ଗୋଟେ ମସ୍ତବଡ଼ ଅପରାଧ କେଶବ ! ଅକ୍ଷମ୍ୟ ଅପରାଧ । ତୁମ ପାଇଁ ଲକ୍ଷ ଲକ୍ଷ ପ୍ରଜାଙ୍କର, ଲକ୍ଷ ଲକ୍ଷ ଯୋଦ୍ଧାଙ୍କର ପ୍ରାଣହାନି ଘଟିଲା । ମୁଁ ତୁମକୁ ଅଭିଶାପ ଦେବି । (କମଣ୍ଡଳରୁ ପାଣି ଢ଼ାଳି ଡାହାଣ ହାତରେ ଧରି ମନ୍ତ୍ର ପାଠ କଲେ । ଆକାଶରୁ ବଜ୍ରପାତ ହେଲା ଓ ବିଜୁଳି ମାରିଲା)

କୃଷ୍ଣ:　ଋଷିବର ! ଅଭିଶାପ ଦେବା ବନ୍ଦ କରନ୍ତୁ । ଏହା ଆପଣଙ୍କୁ ଶୋଭା ପାଏ ନାହିଁ ।

ଉତଙ୍ଗ:　ତମେ ଅଭିଶାପକୁ ଡରୁଚ କେଶବ ? ଅଥଚ ଏତେ ବଡ଼ ସର୍ବନାଶକାରୀ ଯୁଦ୍ଧଟେ କରେଇ ଦେଲ ? ଏ ପାପ ପାଇଁ ତମେ ଅବଶ୍ୟ ଅଭିଶାପ ପାଇବ ଏବଂ ସେ ଅଭିଶାପରେ ଯଦୁ ବଂଶ ଧ୍ୱଂସ ହୋଇଯିବ ।

କୃଷ୍ଣ:　ଦେଖନ୍ତୁ ମହର୍ଷି ! ଯୁଦ୍ଧ ବନ୍ଦ ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଥିଲି, ମହା ପ୍ରୟାସ କରିଥିଲି । ସେମାନେ କେହି ଶୁଣିଲେ ନାହିଁ । ଶେଷରେ ମୁଁ ଦେଖିଲି ଯୁଦ୍ଧ ଏକ ଆବଶ୍ୟକତା । ଏଥିପାଇଁ ଆପଣ ଯଦି ମତେ ଶାପ ଦିଅନ୍ତି, ତା ହେଲେ ଆପଣଙ୍କ ଆଧ୍ୟାତ୍ମିକ ଉପଲବ୍ଧି ନଷ୍ଟ ହେଇଯିବ ।

ଉତଙ୍ଗ:　କେଶବ ! ମତେ ଆଧ୍ୟାତ୍ମିକ ଉପଲବ୍ଧି ନଷ୍ଟ ହେଇଯିବାର ଭୟ ଦେଖାଉଛ ? ମୁଁ ଋଷି ଉତଙ୍ଗ ବସିଛି ଏଇଠି । ମୁଁ ଥିବାପର୍ଯ୍ୟନ୍ତ ତପୋବନ ମୋର ଶୂନ୍ୟ ହେବ ନାହିଁ । ତପୋବଳ ଏବଂ ଆଧ୍ୟାତ୍ମିକତା ନଷ୍ଟ ହେବ ନାହିଁ ।

କୃଷ୍ଣ:　ହେ ମହାନ ତପସ୍ୱୀ ! ସେହି କାରଣରୁ ମୁଁ ଆପଣଙ୍କୁ ସମ୍ମାନ କରି ସତ୍ୟ ଓ ନିଷ୍ଠାର ସହ ସତ୍କାର କରିବା ପାଇଁ ଆସିଛି । ଏ ସୃଷ୍ଟିର ପଞ୍ଚଭୂତ ମୋ ଉପରେ ଅବସ୍ଥିତ । ପ୍ରଜାମାନଙ୍କର ମଙ୍ଗଳ ପାଇଁ ଧର୍ମର ପ୍ରସାର ପାଇଁ ଏବଂ ଅଧର୍ମୀମାନଙ୍କର ବିନାଶ ପାଇଁ ଏ ଯୁଦ୍ଧ କଣ ଆବଶ୍ୟକ ନଥିଲା ଋଷିବର ? ଅଧର୍ମ ବିନାଶ ନହେଲେ ଆପଣଙ୍କ ଭଳି ତପସ୍ୱୀମାନେ ଏ ତପୋବନରେ ଧର୍ମର ଧ୍ୱଜା କେମିତି ଉଡାଇବେ ? ପୃଥିବୀର କଲ୍ୟାଣ ପାଇଁ ଯାଗଯଜ୍ଞ କିପରି କରିବେ ?

ଉତଙ୍ଗ:　ହେ ମହାନ ତପସ୍ୱୀ ! ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ରଙ୍କର ଏକତ୍ରିତ ରୂପ ଆପଣ ! ମୋ ଉପରେ କୃପା କରି ଦର୍ଶନ ଦେଇଛନ୍ତି । ଆପଣଙ୍କୁ କୋଟି କୋଟି ପ୍ରଣାମ । ହେଲେ ଏ ପଟେ କୁଆଡେ ଆସିଲେ ?

କୃଷ୍ଣ:　ଆଉ କୁଆଡେ ଯିବି ଋଷିବର ? ଦ୍ୱାରିକାର ଯଦୁବଂଶ ଛାରଖାର ହୋଇଗଲା । ପ୍ରଜାମାନେ ସୋମରସ ପାନକରି ଉନ୍ମତ୍ତ ହୋଇ ପରସ୍ପରଙ୍କୁ ହତ୍ୟା କରୁଛନ୍ତି । ମାତା ଗାନ୍ଧାରୀଙ୍କ ଅଭିଶାପ ଫଳିଗଲା । ସେଥିରେ ପୁଣି ଆଜି ଜନ୍ମାଷ୍ଟମୀ । ମୋର ଜନ୍ମ ଦିନ, ଆଜି ମୋର ପିଇସୀ କୁନ୍ତୀ ମତେ ଖୁବ୍ ମନେ ପକାଉଛନ୍ତି । ଯାଉଛି ତାଙ୍କୁ ଦେଖାକରି ଦ୍ୱାରିକା ଫେରି ଆସିବି । ମତେ ଆଜ୍ଞା ଦିଅନ୍ତୁ ଋଷିବର ।

*(କୃଷ୍ଣଙ୍କ ରଥ ଚାଲିଗଲା । ମଞ୍ଚ ଅନ୍ଧାର ହେଲା)*

## ଦୃଶ୍ୟ – ୨

*ସମ୍ମୁଖରେ ପୁତୁରା କୃଷ୍ଣଙ୍କ ମୂର୍ତ୍ତି, ଧୂପ, ଦୀପ ଓ ଗନ୍ଧରେ ଅର୍ଚ୍ଚିତ । ଅତି ବିକଳରେ କାନ୍ଦୁଛନ୍ତି କୁନ୍ତୀ ଜ୍ୟେଷ୍ଠପୁତ୍ର କର୍ଣ୍ଣର ମୃତ୍ୟୁରେ:*

କୁନ୍ତୀ: କିଂନ୍ତୁ... ଇଏ କି ବିଡମ୍ବନା ଭଗବାନ? ଗୋଟେ ଭାଇ ଆଉ ଗୋଟେ ଭାଇକୁ ବଧ କଲା ଏବଂ ଅନ୍ୟ ଭାଇମାନେ ଆନନ୍ଦ ଉତ୍ସବ କରୁଛନ୍ତି । ଆଉ ମୁଁ ଇମିତି ଏକ ହତଭାଗିନୀ ଯେ ମୁଁ ତା ପାଇଁ ଶୋକ କରିବା ମନା ! ମୁଁ କେମିତି କହିବି ସେମାନଙ୍କୁ... ଯେ ଯୋଉ ପୁତ୍ରର ଶବ କୁରୁକ୍ଷେତ୍ରରେ ଅନାଥ ହୋଇ ପଡିଛି, ସେଇଟା ମୋର ପୁଅ ! ସେ ରାଧେୟ ନୁହେଁ କୌନ୍ତେୟ !

*(ପ୍ରବେଶ କଲେ ପଞ୍ଚ ପାଣ୍ଡବ ଏବଂ ସାଂଗରେ ଶ୍ରୀକୃଷ୍ଣ)*

ରେ ମୋର ହତଭାଗ୍ୟ ପୁଅ ! ଏମିତି ଅବେଳରେ ଜନ୍ମ ନେଲୁ ଯେ ତତେ ଦିନେ ହେଲେ କୋଳରେ ଧରି ଖେଳାଇବାର ସୌଭାଗ୍ୟ ମିଳିଲା ନାହିଁ ଆଜି ମୋର ଇଚ୍ଛା ହେଉଛି ପୁଅ ! ଦିନଟେ ହେଲେବି ମା' କୋଳର ସ୍ପର୍ଶ ପାଇନଥିବା ତୋର ଶବଟାକୁ ଆଜି ମୁଁ ଏବେ କୋଳରେ ଧରି ତତେ... ତତେ ଶୁଆଇ ଦେବି ସବୁଦିନ ପାଇଁ (ବିକଳ ହୋଇ କାନ୍ଦିଲେ)

*(ମା'ଙ୍କର ଏଇ ବିକଳ ଅବସ୍ଥା ଦେଖି ସହି ନ ପାରି ଯୁଧିଷ୍ଠିର ପାଖକୁ ଯାଇ କହିଲେ)*

ଯୁଧିଷ୍ଠିର: ମାତାଶ୍ରୀ ! ଆପଣ ଆମର ଶତ୍ରୁ ନିହତ ହେଲା ବୋଲି କ୍ରନ୍ଦନ କରୁଛନ୍ତି କାହିଁକି ? କର୍ଣ୍ଣ ଆମର ପରମ ଶତ୍ରୁ । ଅତିଶୟ ଗର୍ବୀ ଓ ଅହଂକାରୀ ।

କୁନ୍ତୀ: ରେ ହତଭାଗା ଯୁଧିଷ୍ଠିର ! ଅର୍ଜୁନ ଯାହାକୁ ମାରିଲା ଓ ତମେ ଯାହା ମୃତ୍ୟୁରେ ଉଲ୍ଲସିତ ହେଲ ସିଏ ତମର ଭାଇ ଥିଲା ।

ଯୁଧିଷ୍ଠିର: ନା, ଅସମ୍ଭବ ! ସେ ଅହଂକାରୀ ଅଙ୍ଗରାଜ କାହିଁକି ଆମର ଭାଇ ହେବ ?

ଅର୍ଜୁନ: ସେ ଗୋଟାଏ ସୁତ ପୁତ୍ର । ଗୋଟାଏ ସଂସ୍କାରବିହୀନ ଗୁଣ୍ଡା ପ୍ରକୃତିର ଲୋକ, ତାର ମୃତ୍ୟୁରେ ଆପଣ ବିକଳ ହୋଇ କାନ୍ଦୁଛନ୍ତି ମାତାଶ୍ରୀ ?

କୁନ୍ତୀ: ଆରେ ମୂର୍ଖ ! ଯିଏ ଏଇଠି ବୀରଗତି ପ୍ରାପ୍ତ ହୋଇ ଶୋଇଛି ସିଏ ତମର ଜ୍ୟେଷ୍ଠ ଭ୍ରାତା !

ଯୁଧିଷ୍ଠିର: କର୍ଣ୍ଣ ଆମର ଜ୍ୟେଷ୍ଠ ଭ୍ରାତା ? ଏହା କିପରି ସମ୍ଭବ ହେବ ମାତା ! ହେ କେଶବ ! ମାତାଙ୍କୁ ମୋର ବୁଝାନ୍ତୁ । ଜାଣେନା ତାଙ୍କର କଣ ହେଇଛି ! କାହିଁକି ସିଏ ଏପରି କଥା କହୁଛନ୍ତି ?

କୃଷ୍ଣ: କୁହ ପିଇସୀ ନାନା ! ସବୁ କଥା କହିଦିଅ !

କୁନ୍ତୀ: ହଁ, ମୋର ଏଇ ଅଭାଗା ପୁତ୍ର ରାଧେୟ ନଥିଲା, କୌନ୍ତେୟ ଥିଲା ।

କୃଷ୍ଣ: ହଁ ବଡ଼ଭାଇ ! ସାମାଜିକ ଲଜ୍ଜାରୁ ମୁକ୍ତି ପାଇବା ପାଇଁ ମୋ ପିଇସୀ ଏ ଘଟଣାକୁ ଗୋପ୍ୟ ରଖିଥିଲେ । ତାଙ୍କର ଦୁଇକୁଳର ମାର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ମୋ ପିଇସି ଜଣେ ମହାନ ନାରୀ । କୁଳମର୍ଯ୍ୟାଦାକୁ ପାଇଁ ସେ କଥାଟାକୁ ପ୍ରଘଟ ନ କରି ଲୁଚେଇ ରଖିଥିଲେ ।

କୁନ୍ତୀ: ମୁଁ ସେତେବେଳେ ଆଠ ବର୍ଷର ବାଳିକା ।

କୃଷ୍ଣ: ବଡ଼ଭାଇ ! ଭୀମ ଭାଇ ! ଆଉ ସଖା ଅର୍ଜୁନ ! ତମେ ସବୁ ଭାବୁଥିବ କୁମାରୀ ଅବସ୍ଥାରେ ସିଏ କିପରି କର୍ଣ୍ଣଙ୍କୁ ଜନ୍ମ ଦେଲେ ! କିନ୍ତୁ ଯେଉଁ ଅବସ୍ଥାରେ ସେ ଜନ୍ମ ଦେଲେ ସେ କଥା ଜାଣିଲେ ତମେ ସବୁ ନିଶ୍ଚୟ ବିଶ୍ୱାସ କରିବ ! ଜାଣିରଖ ମୋ ପିଇସୀ ନାନା ଗଙ୍ଗା ପରି ପବିତ୍ର । ମୁଁ ତାଙ୍କ ପଣତ ଛୁଇଁ ଶପଥ କରି କହିପାରେ ସେ ନିଷ୍ପାପ (ପଣତକୁ ଧରି) । ଏଇ ଯୋଉ ପଣତ କାନି, ଋଷି, ମହର୍ଷିମାନେ ଭୋଜନ କରି ଯୋଉଥିରେ ହାତ ପୋଛୁଥିଲେ, ତାକୁ ଧରି ମୁଁ ଧନ୍ୟ, ଆଉ ତମେ ପାଞ୍ଚଭାଇ ତମର ମାତାଙ୍କର ମାତୃତ୍ୱ ପାଇଁ ଲଜ୍ଜାରେ ମୁଖ ଅବନତ କରି ଠିଆ ହେଇଛ ?

ଯୁଧିଷ୍ଠିର: ଆମେ କେମିତି ଜାଣିବୁ କେଶବ ? କର୍ଣ୍ଣର ମାତା ଯଦି ଆମର ମାତା ତାହେଲେ କର୍ଣ୍ଣର ପିତା କିଏ ?

କୁନ୍ତୀ: ସୂର୍ଯ୍ୟଦେବ !

କୃଷ୍ଣ: ସେଥିପାଇଁ ସେ ସୂର୍ଯ୍ୟ ଦେବଙ୍କ ପରି ପ୍ରଚଣ୍ଡ ଶକ୍ତିମାନ ଥିଲା ।

ଯୁଧିଷ୍ଠିର: ତମେ ଏ ରହସ୍ୟ ଆଗରୁ ଜାଣିଥିଲ କେଶବ ? ଯଦି ଜାଣିଥିଲ ଆମକୁ କହିଲନି କାହିଁକି ? ଏତେ କଥା ନ ଜାଣି ବିଡମ୍ବନା ହେଲା ! ଆମେ ତାଙ୍କୁ ସୂତ ପୁତ୍ର, ସଂସ୍କାରହୀନ ଉନ୍ମତ୍ତ ଯୋଦ୍ଧା ବୋଲି ଅପମାନ ଦେଲୁ । ଶେଷରେ ତାଙ୍କୁ ବଧ କରି ବିଜୟ ଲାଭ କଲୁ ବୋଲି ଭାବିଲୁ । ସବୁ ଜାଣି ଆପଣ ଆମକୁ କିଛି କହିଲେନି କିପରି ?

କୃଷ୍ଣ: କେମିତି କହିଥାନ୍ତି ? କୋଉ ଅଧିକାରରେ କହିଥାନ୍ତି ? ମାତା ହେବାର

ଖବରଟାକୁ ଏକ ଲଜ୍ଜା ମନେକରି ପିଇସୀ ନାନା ମୋର ଗୁପ୍ତ ରଖିଥିଲେ । ସେ ଯେତେବେଳେ କହି ନାହାନ୍ତି - ସେ ଖବର ପ୍ରଘଟ କରିବା ପାଇଁ ମୁଁ କିଏ ?

ଯୁଧିଷ୍ଠିର: ତା ହେଲେ... ଜ୍ୟେଷ୍ଠ ଭ୍ରାତା ମୋର କଣ ଜାଣିଥିଲେ ଆମେ ସବୁ ତାଙ୍କର ଅନୁଜ ବୋଲି ?

କୁନ୍ତୀ: ଜାଣିଥିଲା ଯୁଧିଷ୍ଠିର । ଦୁର୍ଯ୍ୟୋଧନ ତାକୁ ଯେତେବେଳେ ସେନାପତି ପଦରେ ନିଯୁକ୍ତି କଲେ ସେ ଦିନ ମୁଁ ବିବଶ ହୋଇ ପଡିଲି । ଏକାନ୍ତରେ ଦେଖା କରିଥିଲି ତାକୁ ।

କୁନ୍ତୀ: କହିଥିଲା- ତମର ବିଶେଷ କିଛି କ୍ଷତି ହେବ ନାହିଁ ମା' । ଯଦି ଅର୍ଜୁନ ମରେ ତେବେ ତମେ ପାଞ୍ଚ ପୁତ୍ରର ଜନନୀ ହେବ, ଆଉ ଯଦି ମୁଁ ମରେ ତେବେ ବି ତମେ ପାଞ୍ଚ ପୁତ୍ରର ଜନନୀ ହୋଇ ରହିବ ।

କୃଷ୍ଣ: ପିଇସୀ ନାନାଙ୍କର ଉଦ୍ଦେଶ୍ୟ ଥିଲା ତମମାନଙ୍କୁ କର୍ଣ୍ଣର ଦୈବୀବାଣରୁ ରକ୍ଷା କରିବା ପାଇଁ । ମୃତ୍ୟୁ ବାଣରୁ ରକ୍ଷା କରିବା ପାଇଁ ।

ଅର୍ଜୁନ: ସେ କଣ ଆମକୁ ରକ୍ଷା କଲା ?

କୁନ୍ତୀ: ରକ୍ଷା କରିଛି ଅର୍ଜୁନ । ଯୁଧିଷ୍ଠିର ! ତତେ ଓ ଭୀମକୁ ରକ୍ଷାକରି ସେ ବଡ଼ ଭାଇର ଧର୍ମ ରକ୍ଷା କରିଛି । ମାତାର ଅନୁରୋଧ ରକ୍ଷା କରିଛି । ହେଲେ ମୁଁ ? ମାତାହୋଇ ଦିନେ ତାକୁ କୋଳରେ ଧରି ଗେଲ କରିବାର ସୁଖ ଦେଇ ପାରି ନାହିଁ । ମାତା ହିସାବରେ ମୁଁ ସବୁ ଭୁଲ କରିଛି ।

ଭୀମ: ସେ କଣ ଯୁଦ୍ଧ କ୍ଷେତ୍ରରେ ଜାଣିଥିଲେ ଆମେ ସବୁ ତାଙ୍କର ଅନୁଜ ବୋଲି ?

କୃଷ୍ଣ: କର୍ଣ୍ଣ ସବୁ ଜାଣିଥିଲେ ।

ଅର୍ଜୁନ: ଆମେ ହିଁ କିଛି ଜାଣି ନଥିଲୁ ମାତାଶ୍ରୀ ! ନହେଲେ ଆମର ଜ୍ୟେଷ୍ଠ ଭ୍ରାତା ଆମରି ହାତରେ ବଧ ହୋଇ ନଥାନ୍ତେ । ଭାତୃ ହତ୍ୟାର ପାପ ଲାଗି ନଥାନ୍ତା ଆମ ଦେହରେ ।

ଯୁଧିଷ୍ଠିର: ଆମେ କୌରବମାନଙ୍କଠାରୁ ନିଜ ଅଧିକାର ଛଡେଇ ଆଣିଛେ ବୋଲି ମିଛରେ ଗର୍ବ କରୁଛେ । ପ୍ରକୃତରେ ଆମେ ଆମର ଜ୍ୟେଷ୍ଠ ଭ୍ରାତା କର୍ଣ୍ଣଙ୍କୁ ବଧ କରି ତାଙ୍କ ଅଧିକାର ଛଡେଇ ନେଇଛେ । ରାଜ ସିଂହାସନ ଉପରେ ବସିବାର ଅଧିକାର କେବଳ ବଡ଼ ଭାଇର । ଏବଂ ଆମେ ସମସ୍ତେ ମିଶି ତାଙ୍କୁ ହତ୍ୟା କରିଛେ । ଛି !

ଦରକାର ନାହିଁ ଏ ସିଂହାସନ! ଏ ବିଜୟ ପରେ ମୋ ଅସ୍ତିତ୍ୱ ଉପରେ ମୋର ଘୃଣା ଆସୁଛି । ଭ୍ରାତା କର୍ଣ୍ଣ ଆମ ପାଇଁ ତ୍ରେତୟାର ଶ୍ରୀରାମଙ୍କର ପରି ପୂଜ୍ୟ ଥିଲେ ।

**କୃଷ୍ଣ:** କିନ୍ତୁ ଦିବଂଗତ କର୍ଣ୍ଣଙ୍କ ପାଇଁ ତମର ଏତେ ଶୋକ ଆଉ ସନ୍ତାପ କାହିଁକି ବଡ଼ଭାଇ ? ଆପଣ କେବଳ ଯୁଦ୍ଧରେ କ୍ଷତ୍ରିୟ ଧର୍ମ ପାଳନ କରିଛନ୍ତି । ସଖା ଅର୍ଜୁନ ମଧ୍ୟ ପର୍ଯ୍ୟନ୍ତ ଜାଣି ନାହାନ୍ତି କର୍ଣ୍ଣ କିଏ ! ତାର ପିତା କିଏ ! ପ୍ରଥମେ ସେ କଥା ଜାଣିବା ପାଇଁ ଚେଷ୍ଟାକର । ପିଇସି ନାନା ! ଆପଣ ଏ ପର୍ଯ୍ୟନ୍ତ ଗୋପ୍ୟ ରଖିଥିବା ପିଲାଦିନର କାହାଣୀ ମୋର ଭାଇମାନଙ୍କୁ କୁହନ୍ତୁ ।

**କୁନ୍ତୀ:** ଠିକ୍ ଅଛି ଯୁଧିଷ୍ଠିର । ଶୁଣ ମୋର ସ୍ନେହହୀନ ପିଲାଦିନର କଥା । ମୁଁ ସେତେବେଳେ ଆଠ ବର୍ଷର ବାଳିକା...

*(ଆବହ ସଂଗୀତରେ ପରିବର୍ତ୍ତନ । ମଞ୍ଚ ଅନ୍ଧାର ହେଲା)*

## ଦୃଶ୍ୟ - ୩

*ମଥୁରା ନଗରୀ ରାଜପ୍ରସାଦ । ରାଜା ଶୁରସେନ । ସମୟ ଅପରାହ୍ନ । ଆବହ ସଂଗୀତରେ ଲଘୁ ନୃତ୍ୟର ଛନ୍ଦ । ବାର/ଚଉଦ ବର୍ଷର ପୃଥା ତିନିଜଣ ସମବୟସୀ ସଖୀଙ୍କୁ ଧରି ଶୂରସେନଙ୍କ ରାଜ ଉଦ୍ୟାନରେ ପ୍ରଜାପତି ଧରୁଛନ୍ତି । ତିନିଜଣ ସଖୀ ହେଇଛନ୍ତି ପ୍ରଜାପତି ଓ ସେମାନେ ଉଡିବୁଲିବାର ଅଭିନୟ କରୁଛନ୍ତି । ପ୍ରବେଶ କଲେ ଶୂରସେନ, ସାଙ୍ଗରେ ତାଙ୍କର ବନ୍ଧୁ ଏବଂ ପିଇସୀ ପୁଅ ଭାଇ କୁନ୍ତୀଭୋଜ । ଭୋଜରାଜା କୁନ୍ତୀଭୋଜ ଝିଅମାନଙ୍କର କ୍ରୀଡା ଦେଖି ମୁଗ୍ଧ ହେଉଥିଲେ ।*

କୁନ୍ତଭୋଜ: ଏଣିକି ବୟସ ହେଲା, ଭାବୁଛି ଜଣେ ବ୍ରାହ୍ମଣ ଋଷିଙ୍କଠାରୁ ଦୀକ୍ଷା ଗ୍ରହଣ କରିବି । କିନ୍ତୁ ବ୍ରାହ୍ମଣଙ୍କ ସେବା କରିବା ପାଇଁ ମୋ ପ୍ରାସାଦରେ କନ୍ୟାଟିଏ ନାହିଁ । ଏମାନଙ୍କ ମଧ୍ୟରୁ ଗୋଟିଏ କନ୍ୟା ମତେ ଦେଇ ପାରିବ ଶୂରସେନ ? ଅନେକ ଦିନ ତଳେ ତମେ କଥା ଦେଇଥିଲ- ଝିଅଟିଏ ହେଲେ ମତେ ଦେବ ବୋଲି ।

ଶୂରସେନ: କଥା ଦେଇଛି ମାନେ ଅବଶ୍ୟ ପାଳନ କରିବି କୁନ୍ତ ଭୋଜ । ଏଇ ଯୋଉ ଝିଅଟିକୁ ଦେଖୁଛ, ତା ନାଁ ପୃଥା ସିଏ ମୋ ଝିଅ । ଇଏ ଗର୍ଭରେ ଥିଲା ମୁଁ ତୁମକୁ କଥା ଦେଇଥିଲି । ବର୍ତ୍ତମାନ ଆସି ବାରବର୍ଷ ହେଲା ଯାକୁ ତମେ ବର୍ତ୍ତମାନ ନେଇ ଯାଇ ପାର ।

କୁନ୍ତଭୋଜ: ବର୍ତ୍ତମାନ ?

ଶୂରସେନ: ହଁ ବର୍ତ୍ତମାନ, କୁନ୍ତଭୋଜ ! ତମେ କେବଳ ମୋର ପିଇସିଙ୍କ ପୁଅ ଭାଇ ନୁହଁ । ମୋର ଘନିଷ୍ଠ ବନ୍ଧୁ ମଧ୍ୟ, ମୁଁ ତାକୁ ଏଇଠିକି ଡାକି ଦେଉଛି । ଯଦି ମନକୁ ପାଉଛି ତାକୁ ବର୍ତ୍ତମାନ ନେଇଯାଅ । ପୃଥା ! ଆସିଲୁ ମା' ! ଏଇଠିକି ଟିକେ ଆ' ।

(ପୃଥା ପ୍ରବେଶ କଲା)

ଇଏ କୁନ୍ତଭୋଜ । ମୋର ପିଇସିଙ୍କ ପୁଅ । ଆମ ମଥୁରାର କିଛି ଦୂରରେ ଅଶ୍ୱନଦୀ ବହି ଯାଉଛି । ତାର ତୀରବର୍ତ୍ତୀ କୁନ୍ତ ରାଜ୍ୟର ସିଏ ରାଜା । ତାଙ୍କୁ ପ୍ରଣାମ କର ମା' ।

*(ପୃଥା ପାଦଛୁଇଁ ପ୍ରଣାମ କଲା । କୁନ୍ତଭୋଜ ତାକୁ ଉଠାଇନେଲେ)*

କୁନ୍ତଭୋଜ: ବାଃ ! ଝିଅଟି ସୁନ୍ଦରୀ । ପାଠ ଶାଠ ପଢ଼ୁଛୁ ମା' ?

ପୃଥା: ଆଜ୍ଞା, ମୋର ଦୁଇଜଣ ଗୁରୁ ଅଛନ୍ତି । ଜଣେ ସାହିତ୍ୟ ଓ ବ୍ୟାକରଣ ପଢ଼ାଉଛନ୍ତି । ଆଉ ଜଣେ ନୃତ୍ୟ

କୁନ୍ତଭୋଜ: ବାଃ ଖୁବ୍ ଭଲ ।

ଶୂରସେନ: ମୁଁ କୁନ୍ତଭୋଜଙ୍କ ହାତରେ ତତେ ସମର୍ପଣ କରିଦେଉଛି ତୁ ତାଙ୍କର ଦତ୍ତକ କନ୍ୟାରୂପେ ଆଜିଠାରୁ ତାଙ୍କ ରାଜ ପ୍ରାସାଦରେ ରହିବୁ ।

ପୃଥା: ଆଉ ମୋର ସହଚରୀ ମାନେ ?

ଶୂରସେନ: ସେଇଠି ନୂଆ ରାଜପ୍ରାସାଦରେ ନୂଆ ସଖୀ ମିଳିବେ ।

କୁନ୍ତଭୋଜ: ସେଇଠି ଖେଳିବା ପାଇଁ ବହୁତ ସଖୀ ଅଛନ୍ତି ।

ପୃଥା: ଆଉ କେବେ ଏଠିକି ଆସିବି ନାହିଁ ?

ଶୂରସେନ: ତତେ ପରା ମୁଁ ଦାନ କରିଦେଲିରେ ଝିଅ ! ଆଜିଠୁ ତୁ କୁନ୍ତଭୋଜଙ୍କ କନ୍ୟା, ତାଙ୍କୁ ବାପା ବୋଲି ଡାକିବୁ ଆଉ ମତେ ଭୁଲିଯିବୁ । ଭୁଲିଯିବୁ ମଥୁରାର ଏଇ ରାଜପ୍ରସାଦକୁ

ପୃଥା: କେମିତି ଭୁଲିଯିବି ବାପା ? ଏଇଠି ତମେ ଅଛ, ମା' ଅଛନ୍ତି, ଏଇଟା ତ ଆମ ଘର ।

ଶୂରସେନ: କନ୍ୟାମାନଙ୍କର ଘର ବୋଲି କିଛି ନାହିଁ ପୃଥା ! ତତେ ଯେମିତି ହେଲେ ଦିନେ ପର ଘରକୁ ଯିବାକୁ ହେବ ! ତୁ କଣ ବିବାହ ପରେ ମଥୁରାରେ ରହିପାରିବୁ ? ମତେ ପରା କନ୍ୟାଦାନ କରିବାକୁ ପଡ଼ିବ ! ସେଇଥିପାଇଁ ତତେ ମୁଁ ଆଜିଠାରୁ ଦାନ କରିଦେଲି । ଯାପରେ ତୁ ଆଉ ମୋ ଝିଅ ନୁହଁ । ତାଙ୍କର ଝିଅ । ଯା'... ତାଙ୍କ ସାଙ୍ଗରେ ଯା ।

(ପୃଥା ଅବାକ୍ ହୋଇ ମନ ମାରି ରହିଁଲା । କଣ କହିବ ଜାଣି ପାରୁ ନଥିଲା)

ଶୂରଶେନ: ଯା ! ମୁଁ ଆଦେଶ କରୁଛି ଯା' । ଯାଅ କୁନ୍ତଭୋଜ ! ପତ୍ନୀଙ୍କୁ କହିବ ମୋ କନ୍ୟାର ଉପଯୁକ୍ତ ଯତ୍ନ ନେବେ । ଏଣିକି ଜଣେ ଋଷିଙ୍କଠାରୁ ତମେ ମନ୍ତ୍ର ଗ୍ରହଣ କରିବା ପାଇଁ ଯୋଗ୍ୟ ବିବେଚିତ ହେବ । କାରଣ ତମର କନ୍ୟାଟିଏ ଅଛି ଏବଂ କନ୍ୟାଟି ବ୍ରାହ୍ମଣଋଷିଙ୍କ ସେବାରେ ଲାଗିବ ଏଥର ଖୁସି ।

କୁନ୍ତଭୋଜ: ମୁଁ ତୁମ ପାଖରେ କୃତଜ୍ଞ ଶୂରସେନ ! ମତେ ବିଦାୟ ଦିଅ । ଆ' ମା' (ପୃଥାର ହାତ ଧରିଲେ । ପୃଥା କ୍ଷଣିକ ପାଇଁ କୁନ୍ତଭୋଜଙ୍କ ହାତରୁ ହାତ

ଖସାଇ ଆଣି ଶୂରଶେନଙ୍କ ପାଦ ଛୁଇଁ ପ୍ରଣାମ କଲା ଓ ଉଠି ଶୂରସେନଙ୍କୁ ଜାବୁଡ଼ି ଧରି କହିଲା ।)

ପୃଥା: ଯାଉଛି ବାପା ! ମତେ କାହିଁକି ଏଇ ଶାସ୍ତି ଦେଲେ ଜାଣିବା ପାଇଁ ମୋର ବୟସ ହେଇନି । ଯଦି ଅଜାଣତରେ କିଛି ଦୋଷ କରିଥାଏ ମାର୍ଜନା କରିବ । ଏଇ ଦେଖ ! ତମର ଦାନର ମାର୍ଯ୍ୟାଦା ରଖିବାକୁ ମୁଁ କୁନ୍ତରାଜ୍ୟକୁ ଚାଲିଯାଉଛି । ମଝିରେ ମଝିରେ ତମ ଝିଅ ପୃଥାକୁ ଦେଖିବା ପାଇଁ କୁନ୍ତ ରାଜ୍ୟକୁ ଆସୁଥିବ ।

ଶୂରସେନ: ଭୁଲି ଯା' ପୃଥା ! ମଥୁରା ତୋର ଦିନେ ଜନ୍ମଭୂମି ଥିଲା- ଏ କଥା ଭୁଲିଯା'ପୃଥା । ଦାନ କରିବା ଦ୍ରବ୍ୟରେ ମୋହ ରଖି ତା ପାଖକୁ ବାରମ୍ବାର ଯିବା ଗୋଟେ ଦୁର୍ବଳତା । ସେଥିରେ ଦାନର ମାର୍ଯ୍ୟାଦା ହାନି ହୁଏ । ମୁଁ ତତେ କୁନ୍ତଭୋଜ ହାତରେ ଦତ୍ତକନ୍ୟା ରୂପେ ସଂପ୍ରଦାନ କରିଦେଇଛି । ବର୍ତ୍ତମାନ ଠାରୁ ତୁ କୁନ୍ତଭୋଜ କନ୍ୟା । ଯାଅ କୁନ୍ତଭୋଜ ! ତୁମ କନ୍ୟାକୁ ନେଇ ଶୁଭ ଲଗ୍ନରେ ଯାତ୍ରା କର କୁନ୍ତଭୋଜ ପୃଥାର ହାତ ଧରି ପ୍ରସ୍ଥାନ କଲେ ।

*(ଆବହ ସଗୀତ ଗମ୍ଭୀର ଓ କରୁଣ)*

# ଦୃଶ୍ୟ-୪

*(ପୌରାଣିକ ଯୁଗର ରଣ ଦୁଂଦୁଭିରେ କାନ ଅତଡ଼ା ପଡ଼ିଯାଉଛି । ପ୍ରବେଶ କଲେ ମହାରଥୀ ଭୀଷ୍ମ, ହସ୍ତିନାର ରାଜ ପ୍ରସାଦ ଭିତରର କୋଠରୀରେ ବ୍ୟସ୍ତ ଭାବରେ ପଦ ଘରଣା କରୁ କରୁ ମହାରାଜ ପାଣ୍ଡୁଙ୍କୁ ଡାକିଲେ ।)*

ଭୀଷ୍ମ: ମହାରାଜ ପାଣ୍ଡୁ! ତମେ କେଉଁଠି... ?

ପାଣ୍ଡ: (ପ୍ରବେଶ କରି) ପ୍ରଣାମ ବଡ଼ବାପା । କଣ ହେଇଛି ? ଆପଣ ଏତେ ବ୍ୟସ୍ତ କାହିଁକି ?

ଭୀଷ୍ମ: ପାଣ୍ଡୁ !ଏଇ ଯୋଉ ରଣ ଦୁଂଦୁଭି ଶୁଭୁଛି... ଏଇଟା କାହାର ? କୌଣସି ଶତୃପକ୍ଷ ହସ୍ତିନା ଆକ୍ରମଣ କରିବାକୁ ଆସୁଛନ୍ତି ନା କଣ ?

ପାଣ୍ଡୁ: ନା ବଡ଼ବାପା । ଦୂତ ଖବର ନେଇ ଆସିଛି ଇନ୍ଦ୍ର ଗାଂଧାର ଦେଶ ଉପରେ ଆକ୍ରମଣ କରିବାକୁ ଯାଉଛନ୍ତି ।

ଭୀଷ୍ମ: ଇନ୍ଦ୍ର ଗାନ୍ଧାର ଦେଶ ଉପରେ ଆକ୍ରମଣ କରିବେ ? ଗାନ୍ଧାର ତ ଏଡ଼ିକି ଟିକେ ଦେଶ । ତା ଉପରେ ପୁଣି ଇନ୍ଦ୍ରଙ୍କ କୋପ ଦୃଷ୍ଟି ପଡ଼ିଲା କାହିଁକି ?

ପାଣ୍ଡୁ: ଅମରାବତୀକୁ ଯିବାପାଇଁ ଏକମାତ୍ର ପ୍ରବେଶପଥ ଗାନ୍ଧାର । ଗାନ୍ଧାର ଇନ୍ଦ୍ରଙ୍କ କବଳକୁ ଆସିଗଲେ ଆପଣ ଆଉ ରାଜ୍ୟ ଜୟ କରିବା ପାଇଁ ଆଗକୁ ଯାଇପାରିବେ ନାହିଁ ।

ଭୀଷ୍ମ: (ହସି) ଇନ୍ଦ୍ର ମୋ ବାଟରେ କଣ୍ଟା ହେଇ ଠିଆ ହେବେ ?

ପାଣ୍ଡୁ: ହଁ ତାଙ୍କର ଭୟ କେବଳ ଆପଣଙ୍କୁ । କାରଣ ଆପଣ ଋହିଁଲେ ତାଙ୍କର ଇନ୍ଦ୍ର ପଦ ହରଣ କରି ନେଇପାରିବେ । ତେବେ ଏଥର ଇନ୍ଦ୍ରଙ୍କ ସାଂଗରେ ବରୁଣ, ଯମ ଓ ପବନ ମଧ୍ୟ ଅଛନ୍ତି । ସେମାନେ ଋହାନ୍ତି ନିରପେକ୍ଷ ଗାଂଧାର ଦେଶର ପତନ । କାରଣ ଗାନ୍ଧାର କୌଣସି ଶକ୍ତି ମେଣ୍ଟ ମଧ୍ୟରେ ନାହିଁ ।

ଭୀଷ୍ମ: ଏପରି ଏକ ଆନ୍ତର୍ଜାତିକ ପରିସ୍ଥିତିରେ ହସ୍ତିନାର ଭୂମିକା କଣ ହେବ ସେ ସଂପର୍କରେ ତୁମର ଭ୍ରାତା ଧୃତରାଷ୍ଟ୍ରଙ୍କ ସହ ଆଲୋଚନା କରିଛ ପାଣ୍ଡୁ? ଶୁଣିଲି ଗାନ୍ଧାର ରାଜା ଦ୍ରୁପଦ ତାଙ୍କ ପୁତ୍ର ଶକୁନିକୁ ପଠେଇଛନ୍ତି ।

ପାଣ୍ଡୁ: ମୁଁ ତାକୁ ଅତିଥିଶାଳାରେ ଅବସ୍ଥାନ କରାଇଛି ବଡ଼ବାପା । ତାଙ୍କର ପରିଚର୍ଚ୍ଚା ପାଇଁ ଦାସୀ, ପରିଋରିକାମାନେ ନିଯୁକ୍ତ ହୋଇଛନ୍ତି ।

ଭୀଷ୍ମ: ମୁଁ ଯିବି ତାଙ୍କ ସାଂଗେ ଆଲୋଚନା କରିବି ? କିନ୍ତୁ ମୁଁ କିଏ ? ହସ୍ତିନାର ସମ୍ରାଟ ଧୃତରାଷ୍ଟ୍ର ଯିବା କଥା । କାହାନ୍ତି ଧୃତରାଷ୍ଟ୍ର ?

ପାଣ୍ଡୁ: ଭ୍ରାତା ଧୃତରାଷ୍ଟ୍ରଙ୍କୁ ନେଇ ସାରଥୀ ହସ୍ତିନା ନଗର ଭ୍ରମଣରେ ଯାଇଛନ୍ତି ।

ଭୀଷ୍ମ: ଏ ପର୍ଯ୍ୟନ୍ତ ଫେରି ନାହାନ୍ତି କାହିଁକି ? ସାଙ୍ଗରେ କେହି ଦେହରକ୍ଷୀ ଯାଇଛି ?

ପାଣ୍ଡୁ: ସୁରକ୍ଷା ବ୍ୟବସ୍ଥା ହସ୍ତିନା ସମ୍ରାଟଙ୍କର କଣ ଦରକାର ବଡ଼ବାପା ? ସେତ ନଗର ଭ୍ରମଣ କରି ଆସିବେ ।

ଭୀଷ୍ମ: ସେଇଠି ତମେ ଭୁଲ କରୁଛ ପାଣ୍ଡୁ । ଭ୍ରାତା ତମର ଜନ୍ମାନ୍ଧ । ରାଜ୍ୟର କୌଣସି ବିଦ୍ରୋହୀ ପ୍ରଜା ଯଦି ଏ ସୁଯୋଗ ନେଇ ତାଙ୍କ ଉପରେ ଆକ୍ରମଣ କରେ ? ଏଥିରେ କଣ ହସ୍ତିନା ରାଜ୍ୟର ସମ୍ମାନ କ୍ଷୁର୍ଣ୍ଣ କରିବନାହିଁ ପାଣ୍ଡୁ ? ତମର ନିଜର ମଧ୍ୟ କଣ ଅପମାନ ହେବ ନାହିଁ ?

ପାଣ୍ଡୁ: ଅବଶ୍ୟ ହେବ ବଡ଼ବାପା ! ମୁଁ ତ ହସ୍ତିନାର ନିମିତ୍ତ ମାତ୍ର ରାଜା । ଭ୍ରାତାଙ୍କ ପାଇଁ ଗୋଟିଏ ମୋହର ମାତ୍ର । ତଥାପି ମୋ ପଛରେ ଅଭୟ ଓ ଆର୍ଶୀବାଦର ବରଦାନ ରୂପେ ଆପଣ ଦଣ୍ଡାୟମାନ ଅଛନ୍ତି । ଏଥିରେ କୋଉ ପ୍ରଜା ବିଦ୍ରୋହ କରିବାକୁ ସାହସ କରିବ ?

ଭୀଷ୍ମ: ନା, ମୁଁ ସେ କଥା କହୁନାଇଁ ପାଣ୍ଡୁ । ତମେ ଏ ପର୍ଯ୍ୟନ୍ତ କୁମାର ଅଛ । ଯେ ପର୍ଯ୍ୟନ୍ତ ବିବାହ କରିନାହଁ ସେ ପର୍ଯ୍ୟନ୍ତ ତୁମର ଦାୟିତ୍ୱ ଜ୍ଞାନ ଆସିନାହିଁ ।

ପାଣ୍ଡୁ: ଯୋଉ ପର୍ଯ୍ୟନ୍ତ ଭ୍ରାତା ଧୃତରାଷ୍ଟ୍ରଙ୍କର ବିବାହ ହୋଇନାହିଁ, ମୁଁ କିପରି ବିବାହ କରିବି ?

ଭୀଷ୍ମ: ସେଇଠିତ ସମସ୍ୟା । ଜଣେ ଜନ୍ମାନ୍ଧ ପାଇଁ ରାଜକେମା ଖୋଜିବା ଆମ ପାଇଁ କଷ୍ଟକର ହୋଇ ପଡ଼ିଲାଣି । ତାଛଡ଼ା ସେ ହସ୍ତିନାର ରାଜପଦ ପାଇଁ ଯୋଗ୍ୟ ନୁହେଁ । ତେଣୁ ତୁମକୁ ଅଭିଷିକ୍ତ କରାଗଲା । ଏବେ ରାଜକୋଷ ପ୍ରାୟ ଖାଲି ହୋଇଗଲାଣି । ତୁମକୁ ଯୁଦ୍ଧ ଅଭିଯାନରେ ଯାଇ ରାଜ୍ୟଜୟ କରି ରତ୍ନ ଭଣ୍ଡାରକୁ ପୂର୍ଣ୍ଣ କରିବାକୁ ପଡ଼ିବ ।

ପାଣ୍ଡୁ: ହସ୍ତିନା ରାଜ୍ୟର ଘରିପଟର ଅବସ୍ଥା ଯାହା, ଇନ୍ଦ୍ର ଯେପରି ବରୁଣ, ଯମ ଓ ପବନ ଦେବତାମାନଙ୍କୁ ନେଇ ଗାନ୍ଧାର ଆକ୍ରମଣ କରିବାକୁ ବାହାରିଛନ୍ତି ସେତିକିବେଳେ ରାଜଧାନୀ ଛାଡ଼ି ସୈନ୍ୟମାନଙ୍କୁ ନେଇ ଅନ୍ୟତ୍ର ଯିବା ସହଜ ନ ହୋଇପାରେ । ତଥାପି ମୁଁ ଯିବି ବଡ଼ବାପା ! ଭ୍ରାତା ଧୃତରାଷ୍ଟ୍ରଙ୍କୁ ହସ୍ତିନାର ସିଂହାସନ ଉପରେ ବସାଇ ଦେଇ ମୁଁ ବିଜୟ ଅଭିଯାନରେ

ବାହାରିଯିବି । ଆପଣଙ୍କୁ କିନ୍ତୁ ଏ ବୟସରଙ୍କ ଭ୍ରାତାଙ୍କ ପାଖରେ ଠିଆ ହେବାକୁ ପଡ଼ିବ ବଡ଼ବାପା । ନ ହେଲେ ଫେରିଲାବେଳକୁ ହସ୍ତିନା ଭିତରେ ଶତ୍ରୁ ଦେଶର ଗୁପ୍ତଚର ପଶି ସାରିଥିବେ ।

ଭୀଷ୍ମ: ସେଇଥିପାଇଁ କହୁଛି । ସାଂଗେ ସାଂଗେ ଧୃତରାଷ୍ଟ୍ର ପାଇଁ ଦେହରକ୍ଷୀ ନିଯୁକ୍ତ କର ।

ପାଣ୍ଡୁ: ଯଥା ଆଜ୍ଞା ଜ୍ୟେଷ୍ଠ ପିତା !

## ଦୃଶ୍ୟ-୫

*ହସ୍ତିନାପୁରରେ ଅତିଥିଶାଳା । ପ୍ରବେଶ କଲେ ଗାନ୍ଧାର ରାଜପୁତ୍ର ଶକୁନି । ସେ ଦର୍ଶକ ସମାଜକୁ ହାତଯୋଡ଼ି ନମସ୍କାର କରୁଥିଲେ ।*

ଶକୁନି: ଆପଣମାନଙ୍କୁ ନମସ୍କାର, ଯଦିଓ ଆପଣମାନଙ୍କ ମଧ୍ୟରୁ କାହାକୁ ବି ମୁଁ ଚିହ୍ନିନି । ଆପଣମାନେ ବି ଭାବୁଥିବେ ମୁଁ କିଏ? ମୁଁ ଶକୁନି । ଗାନ୍ଧାର ଦେଶର ରାଜପୁତ୍ର । ମହାରଥୀ ଭୀଷ୍ମଙ୍କ ସାଂଗରେ ଦେଖା କରିବାକୁ ପିତା ମତେ ପଠାଇଛନ୍ତି । ସୁନ୍ଦର ଆପଣମାନଙ୍କର ହସ୍ତିନାପୁର । ସୁନ୍ଦର ଆପଣମାନଙ୍କର ଅତିଥିଶାଳା । ଏଇଠି କୌଣସି ଅସୁବିଧା ନାହିଁ । ହସ୍ତିନାପୁର ଆଗରେ ଗାନ୍ଧାର ତ ଗୋଟାଏ କ୍ଷୁଦ୍ର ରାଜ୍ୟ । (ୱିଙ୍ଗସ୍ ପଟକୁ ଚାହିଁ) ଏଇତ ! ଦିଗବିଜୟୀ ବୀର ମହାରଥୀ ଆସୁଛନ୍ତି ।

*(ପ୍ରବେଶ କଲେ ଭୀଷ୍ମ । ସାଙ୍ଗରେ ଧୃତରାଷ୍ଟ୍ର)*

ଆସନ୍ତୁ ଆସନ୍ତୁ ମାନ୍ୟବର । ମୋର ପ୍ରଣାମ ଗ୍ରହଣ କରନ୍ତୁ ! *(ଧୃତରାଷ୍ଟ୍ରଙ୍କୁ ଦେଖାଇ)* ଓ ! ଏ ମହାଶୟ... ?

ଭୀଷ୍ମ: ଇଏ ଧୃତରାଷ୍ଟ୍ର ! ହସ୍ତିନାର ମହାମାନ୍ୟବର ମହାମହିମ ସମ୍ରାଟ ଅଟନ୍ତି ।

ଶକୁନି: କିନ୍ତୁ ମାନ୍ୟବର ! ମୁଁ କାଲି ଅପରାହ୍ନରେ ଯେତେବେଳେ ଏଠାରେ ପହଁଞ୍ଚିଲି ମହାରାଜ ପାଣ୍ଡୁ ତ ହସ୍ତିନାର ସମ୍ରାଟ ଥିଲେ । ସେ ଯା' ହେଉ, ମୁଁ ଆପଣଙ୍କ ସାଙ୍ଗରେ କଥାବାର୍ତ୍ତା କରିବାପାଇଁ ଆସିଥିଲି ମହାରଥୀ ଭୀଷ୍ମ ମାନ୍ୟବର ! ମୋର ପିତା ଗାନ୍ଧାର ରାଜ ଏ ପତ୍ର ଆପଣଙ୍କ ପାଖକୁ ଲେଖିଛନ୍ତି ।

*(ପତ୍ର ପ୍ରଦାନ କଲେ । ପତ୍ର ପାଠ କଲେ ଭୀଷ୍ମ ଏବଂ କହିଲେ)*

ଭୀଷ୍ମ: ଏ କଥା ମୁଁ ଜାଣେ । ସ୍ୱର୍ଗର ରାଜା ଇନ୍ଦ୍ର ବରୁଣ ଏବଂ ବାୟୁ ଦେବତାଙ୍କୁ ଧରି ଗାନ୍ଧାର ଆକ୍ରମଣ କରିବା ପାଇଁ ରଣ ଦୁଂଦୁଭି ବଜାଇ ଯାତ୍ରା କରୁଛନ୍ତି ।

ଧୃତରାଷ୍ଟ୍ର: ଇନ୍ଦ୍ର ଚାହୁଁଛନ୍ତି ଗାନ୍ଧାର ତାଙ୍କର ଅଧୀନରେ ରହିଲେ ସେ ଅମରାବତୀ ଆକ୍ରମଣ କରିବା ପାଇଁ ରାସ୍ତା ପାଇବେ ।

ଶକୁନି: ସେଇଥିପାଇଁ ମୋର ପିତା ହସ୍ତିନା ସମ୍ରାଟଙ୍କର ସାହାଯ୍ୟ ମାଗିଛନ୍ତି । ବିଶେଷ କରି ମହାରଥୀ ଭୀଷ୍ମଙ୍କର ସାହାଯ୍ୟ । କାରଣ ଇନ୍ଦ୍ର କେବଳ ମହାରଥୀ ଭୀଷ୍ମଙ୍କୁ ଭୟ କରନ୍ତି ।

ଭୀଷ୍ମ: ମହାରାଜ ଧୃତରାଷ୍ଟ୍ରଙ୍କ ତରଫରୁ ମୁଁ ଭୀଷ୍ମ ପ୍ରତିଶୃତି ଦେଉଛି - ହସ୍ତିନାପୁର କେବଳ ଗାନ୍ଧାର ରାଜ୍ୟର ବଂଧୁତା ଚାହେଁନା - ଚାହେଁ ତା ସାଙ୍ଗରେ ପାରିବାରିକ ସଂପର୍କ ସ୍ଥାପନ କରିବା ପାଇଁ । ଆମ୍ଭେ ଶୁଣିଛୁ ଗାନ୍ଧାର ରାଜାଙ୍କର ଗୋଟିଏ କନ୍ୟା ଅଛି ।

ଶକୁନି: ସୁନ୍ଦର । ଅତି ସୁନ୍ଦର । ଏଇଟା କଣ ଗୋଟେ ବଡ଼ କଥା ? ମୋର ଗୋଟିଏ ଭଗିନୀ ଅଛି । ଗାନ୍ଧାରୀ । ଶ୍ୟାମାଙ୍ଗୀ, କିନ୍ତୁ ଦେଖିବାକୁ ଅତି ସୁନ୍ଦରୀ । (ଟିକିଏ ରହି) ପାତ୍ରଟି କିଏ ? ମହାରାଜ ପାଣ୍ଡୁ ?

ଭୀଷ୍ମ: ମହାରାଜ ପାଣ୍ଡୁ ମୋର ମୃତ ଭ୍ରାତା ବିଚିତ୍ରବୀର୍ଯ୍ୟଙ୍କର ଦ୍ୱିତୀୟ ପୁତ୍ର । କିନ୍ତୁ...

ଧୃତରାଷ୍ଟ୍ର: କିନ୍ତୁ ମୋର ଦୃଷ୍ଟିଶକ୍ତିର ସମସ୍ୟା ହେତୁ ମୁଁ ପାଣ୍ଡୁକୁ ରାଜ୍ୟକାର୍ଯ୍ୟ ଚଳାଇବା ପାଇଁ ଅନୁରୋଧ କରିଛି । ନ ହେଲେ ମୁଁ ହିଁ ହସ୍ତିନାର ସମ୍ରାଟ ।

ଭୀଷ୍ମ: ଜ୍ୟେଷ୍ଠ ଭ୍ରାତା ଧୃତରାଷ୍ଟ୍ର ଥାଉ ଥାଉ ପାଣ୍ଡୁର ବିବାହ କିପରି ହେବ ? ତେଣୁ ମୁଁ ଚାହୁଁଛି ଧୃତରାଷ୍ଟ୍ରଙ୍କ ସହିତ ଯଦି ତୁମ ଭଗିନୀର ବିବାହ ସଂପନ୍ନ ହୋଇପାରନ୍ତା । ତାହାହେଲେ ହସ୍ତିନାପୁର ଓ ଗାନ୍ଧାରର ସଂପର୍କ ଆହୁରି ନିବିଡ଼ ହୁଅନ୍ତା ।

ଶକୁନି: କିନ୍ତୁ ମାନ୍ୟବର ! ଏ ଯେଉଁ ଦୃଷ୍ଟିଶକ୍ତିର ସମସ୍ୟା କଥା କହିଲେ- ସେଥିରେ...

ଭୀଷ୍ମ: ବଂଧୁ ଶକୁନି ! ଧୃତରାଷ୍ଟ୍ରକୁ ଆପଣ ତ ଦେଖୁଛନ୍ତି । ଦେଖୁଛନ୍ତି ତ କିପରି ସୁଠାମ କିପରି ସ୍ୱାସ୍ଥ୍ୟବାନ ଓ ରୂପବନ୍ତ ସୁପୁରୁଷ । ଅସାଧାରଣ ତାର ଭୁଜବଳ । ତାର ଆଲିଙ୍ଗନରେ ଲୌହସ୍ତମ୍ଭ ମଧ୍ୟଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଏ ।

ଧୃତରାଷ୍ଟ୍ର: ତାଛଡ଼ା ଜ୍ୟୋତିଷଙ୍କର ଭବିଷ୍ୟବାଣୀ ଅଛି । ମୁଁ କୁଆଡ଼େ ଭାରତବର୍ଷର ଏକ ବୃହତ ଶକ୍ତି ଗୋଷ୍ଠୀର ନେତୃତ୍ୱ ନେବି ଭବିଷ୍ୟତରେ । ମୁଁ ହେବି ଆର୍ଯ୍ୟାବର୍ତ୍ତର ଅଧୀଶ୍ୱର । ତୁମ ଭଗିନୀ ମତେ ପତି ରୂପରେ ପାଇଲେ ତାର କୌଣସି ଅସୁବିଧା ହେବ ନାହିଁ ।

ଭୀଷ୍ମ: ତୁମ ଭଗ୍ନୀ ହସ୍ତିନାପୁରର ମହାରାଣୀ ହେଲା ପରେ ଦିନେ ହେବ ରାଜମାତା ଏବଂ ଲୋକମାତା । ତେଣୁ ମୁଁ ଭାବୁଛି ଶକୁନି, ହସ୍ତିନାପୁରର ପଟ୍ଟମହିଷୀ ହେବା ଯେ କୌଣସି ରାଜକୁମାରୀ ପକ୍ଷରେ ଗର୍ବ ଓ ଗୌରବର କଥା ।

*(ଧୃତରାଷ୍ଟ୍ର ଓ ଭୀଷ୍ମଙ୍କ ବିବାହ ପ୍ରସ୍ତାବ ବେଳେ ଶକୁନିର ଜଟିଳ ମାନସିକ ପ୍ରକିୟା ଦୃଷ୍ଟି ଗୋଚର ହେବ । ସେ ନିମ୍ନ ମଂଚର ବାମ ପଟକୁ ଆସି 'ଜନାନ୍ତିକେ'ରେ କହିବ)*

ଶକୁନି: (ଜନାନ୍ତିକେ) ବର୍ତ୍ତମାନ ମୁଁ କଣ କରିବି ? ଏ ଜନ୍ମାନ୍ଧ ରାଜାର ପ୍ରସ୍ତାବ ଦେଲେ ଗାନ୍ଧାରୀ ଯଦି ରାଜି ନହୁଏ ? ତାକୁ ଅଂଧ ବୋଲି କହିବି ନାହିଁ । କାରଣ ଭୀଷ୍ମଙ୍କ ପ୍ରସ୍ତାବରେ ରାଜି ନ ହୋଇ ମୋର ଆଉ ଉପାୟ ନାହିଁ । ଗାନ୍ଧାର ଦେଶକୁ ଇନ୍ଦ୍ରର ଆକ୍ରମଣରୁ ରକ୍ଷା କରିବାକୁ ହେଲେ ମୋ ଆଗରେ ଦ୍ୱିତୀୟ ପ୍ରସ୍ତାବ ନାହିଁ । ବିକଳ୍ପ ନାହିଁ ।

*(ଆଲୋକ ପୁଞ୍ଜିଭୂତ ହୋଇ ଅଂଧକାର ହେଲା)*

## ଦୃଶ୍ୟ-୬

*ରାଜା କୁନ୍ତଭୋଜଙ୍କ ପ୍ରାସାଦର ଉଦ୍ୟାନ । ଏଠାକୁ ୧୪ବର୍ଷରେ କୁନ୍ତୀ ତାଙ୍କ ପିଲାଦିନର ପ୍ରିୟଖେଳ (ପ୍ରଜାପତି ଧରିବା) ଖେଳୁଛନ୍ତି । ପ୍ରବେଶ କଲେ ଋଷି ଦୁର୍ବାସା । ଯୁବକ ଓ ତେଜସ୍ୱୀ । କ୍ଷୁଦ୍ର ବସ୍ତ୍ର ଖଣ୍ଡିଏ ପିନ୍ଧିଛନ୍ତି । ସେ ସେଠାରେ କିଛି ସମୟ ଠିଆ ହୋଇ କୁମାରୀ ମାନଙ୍କ କ୍ରୀଡ଼ା ଉପଭୋଗ କଲେ । ଆବହ ସଂଗୀତରେ ମଧୁର ନୃତ୍ୟର ଛନ୍ଦ ପରିସ୍ଫୁଟିତ । ଯୁବ ତପସ୍ୱୀଙ୍କୁ ଦେଖି ଯୁବତୀ କୁନ୍ତୀ ଖେଳରୁ ଆସି ପାଦଛୁଇଁ ପ୍ରଣାମ କଲେ ।*

କୁନ୍ତୀ: ଋଷିବର ପ୍ରଣାମ ନିବେଦନ କରୁଛି ।

ଦୁର୍ବାସା: ତୁମେ କିଏ ଚାରୁ ହାସିନୀ । ଅପୂର୍ବ ସୁନ୍ଦରୀ ! କୁନ୍ତଭୋଜଙ୍କ କନ୍ୟା ?

କୁନ୍ତୀ: ଆଜ୍ଞା ! ମୋର ନାମ କୁନ୍ତୀ

ଦୁର୍ବାସା: ଯାଅ, ତୁମ ପିତାଙ୍କୁ ଖବର ଦିଅ - ମହର୍ଷି ଦୁର୍ବାସା ଆସିଛନ୍ତି ।

କୁନ୍ତୀ: ଯଥା ଆଜ୍ଞା ।

*(କୁନ୍ତୀ ଏବଂ ତାଙ୍କ ସଖୀମାନେ ମଂଚ ଉପରୁ ନିଷ୍କ୍ରାନ୍ତ ହେଲେ । ଯୁବ ଋଷି ଦୁର୍ବାସା ନିର୍ମିମେଷ ନୟନରେ ଚାହିଁ ରହିଲେ କୁନ୍ତୀଙ୍କୁ ଏବଂ ସ୍ୱଗତୋକ୍ତି କଲେ)*

ଦୁର୍ବାସା: ଆଃ ! କି ଅପରୂପ ସୌନ୍ଦର୍ଯ୍ୟ ଏଇ କନ୍ୟାଟିର । ଏହାର ରୂପ ଓ ଗୁଣକୁ ସମସ୍ତେ ପ୍ରଶଂସା କରୁଛନ୍ତି । ବହୁ ସାଧାରଣ ଋଷି ଏହି ରୂପବତୀ କନ୍ୟାର ସୌନ୍ଦର୍ଯ୍ୟ ସୁଧା ପାନ କରିବାପାଇଁ କୁନ୍ତ ଭୋଜର ପ୍ରାସାଦରେ ଅତିଥି ହୋଇଛନ୍ତି । ଏ କନ୍ୟାର ସେବାପାଇ ପ୍ରସନ୍ନ ହୋଇଛନ୍ତି । ସେଇଥିପାଇଁ ତ ମୁଁ ଆସିଛି । ମୁଁ ମହର୍ଷି ଦୁର୍ବାସା, ସୂର୍ଯ୍ୟ ସ୍ୱରୂପ ତେଜସ୍ୱୀ । ଏହି କନ୍ୟାଠାରୁ ମୋର ସମସ୍ତ ସେବା ପାଇବାର ଅଧିକାର ଅଛି । ମୁଁ ଜଣେ ଖ୍ୟାତନାମା ଋଷି । *(ପ୍ରବେଶ କଲେ ରାଜା କୁନ୍ତଭୋଜ ।)*

କୁନ୍ତଭୋଜ: ପ୍ରଣାମ ମହର୍ଷି ! କ ସୌଭାଗ୍ୟ ମୋର ! ଆପଣଙ୍କ ପାଦଧୂଳି ପାଇ କୁଟୀର ମୋର ପବିତ୍ର ହେଲା । ଆଦେଶ କରନ୍ତୁ (ପାଦଛୁଇଁ ପ୍ରଣାମ କଲେ) । ହେ ମହର୍ଷି ! ଏ ଅଧମ କୁନ୍ତଭୋଜ ପ୍ରୌଢ଼ାବସ୍ଥା ପ୍ରାପ୍ତ ହୋଇଥିବା ସତ୍ତ୍ୱେ ଏ ପର୍ଯ୍ୟନ୍ତ କୌଣସି ବ୍ରାହ୍ମଣଙ୍କଠାରୁ ଦୀକ୍ଷା ଗ୍ରହଣ କରିବାର ସୌଭାଗ୍ୟ ପାଇନାହିଁ ।

ଦୁର୍ବାସା: କୌଣସି ବ୍ରାହ୍ମଣ ଋଷି ତମ ପ୍ରାସାଦରେ ଅବସ୍ଥାନ କରିବା ପାଇଁ ଆଗ୍ରହ କରିବେ ନାହିଁ କୁନ୍ତଭୋଜ । କାରଣ ବ୍ରାହ୍ମଣ ଋଷିମାନଙ୍କ ସେବା ପରିଚର୍ଯ୍ୟା କରିବାପାଇଁ ତମର କନ୍ୟାରତ୍ନଟିଏ ନଥିଲା ଏ ପର୍ଯ୍ୟନ୍ତ ।

କୁନ୍ତଭୋଜ: ଦତ୍ତକ କନ୍ୟାଟିଏ ପାଇଛି ଋଷିବର । ଆପଣ ଯାହାକୁ ଦେଖିଲେ ସେ ହିଁ ମୋର କନ୍ୟା ।

ଦୁର୍ବାସା: ଏହି ଅପରୂପା ସୁନ୍ଦରୀ କନ୍ୟାଟିକୁ କେଉଁଠୁ ପାଇଲ କୁନ୍ତଭୋଜ ?

କୁନ୍ତଭୋଜ: ଇଏ ଆମ ପରିବାରର କନ୍ୟା । ମୋ ମାମୁଁଙ୍କ ପୁଅ ଭାଇ ଶୂରସେନ ଅଛନ୍ତି ମଥୁରାର ରାଜା । ତାଙ୍କର ପୁଅଟିଏ ଝିଅଟିଏ । ପୁଅ ବାସୁଦେବଙ୍କୁ କଂସ ବନ୍ଦୀ କରି ରଖିଛି ଶୁଣିଥିବେ । ଇଏ ବସୁଦେବଙ୍କ ସାନଭଉଣୀ ପୃଥା । ଦତ୍ତକ କନ୍ୟାରୂପେ ମତେ ଭାଇ ଶୂରସେନ ଦାନ କରିଛନ୍ତି ।

ଦୁର୍ବାସା: ବାଃ ! ତା ହେଲେ ଏଣିକି ମଂତ୍ର ସହ ଦୀକ୍ଷା ଗ୍ରହଣ କରିବା ପାଇଁ ଆଉ କୌଣସି ଅସୁବିଧା ନାହିଁ । ମୁଁ ଆଜି ଲଗ୍ନ ଓ ମୁହୂର୍ତ୍ତ ଦେଖି ତୁମକୁ ଦୀକ୍ଷା ଦେବି । ଯା ଛଡ଼ା ମୁଁ ଅନ୍ୟାନ୍ୟ ଋଷି ଓ ବ୍ରାହ୍ମଣ ମାନଙ୍କଠାରୁ ଖବର ପାଉଛି ଯେ ଏହି କନ୍ୟାଟି ଋଷିମାନଙ୍କ ସେବା କରିବାରେ ନିପୁଣା । ସମସ୍ତେ ତାର ସେବା ପାଇ ଧନ୍ୟ ହୋଇଛନ୍ତି । ମୁଁ ମଧ୍ୟ ମନସ୍ଥ କରିଛି ତୁମ୍ଭ ପ୍ରାସାଦରେ ଏକବର୍ଷ ଅବସ୍ଥାନ କରି ମୁଁ କୁନ୍ତୀର ସେବାଯତ୍ନ ପ୍ରାପ୍ତ କରିବାର ସୌଭାଗ୍ୟ ଲାଭ କରିବି । କ'ଣ କହୁଚ ରାଜା ?

କୁନ୍ତଭୋଜ: ଅହୋ ଭାଗ୍ୟ ! ମୁଁ ମୋର ଅତିଥିଶାଳାରେ ଆପଣଙ୍କର ଅବସ୍ଥାନ ପାଇଁ ସମସ୍ତ ବ୍ୟବସ୍ଥା କରିଦେବି । କୁନ୍ତୀ ଆପଣଙ୍କ ସେବା ପରିଚର୍ଯ୍ୟା ଦାୟିତ୍ୱରେ ନିଯୁକ୍ତ ହେବ ।

ଦୁର୍ବାସା: ମୁଁ ଭିକ୍ଷାବୃତ୍ତି କରି ନିଜକୁ ଚଳାଇ ନେବି । କିନ୍ତୁ ମୋର ଗୋଟିଏ ସର୍ତ୍ତ ଅଛି ।

କୁନ୍ତଭୋଜ: ପ୍ରକାଶ କରନ୍ତୁ ମହର୍ଷି ।

ଦୁର୍ବାସା: ମୁଁ ଯେତେବେଳେ ତୁମ ଗୃହରେ ବାସ କରିବି, ସେତେବେଳେ ତୁମ୍ଭେ ବା ତୁମ୍ଭର ଅନ୍ୟ କୌଣସି ପ୍ରଜା ମୋର ଅଭିପ୍ରାୟର କୌଣସି ବିପରୀତ ଆଚରଣ ଯେପରି ନ କରନ୍ତି । ଏଥିରେ ଯଦି ତୁମେ ସମ୍ମତ ହୁଅ ତାହାହେଲେ ମୁଁ ତୁମ୍ଭର ଆତିଥ୍ୟ ଗ୍ରହଣ କରିବି । ମୋ ଇଚ୍ଛା ଅନୁସାରେ ସବୁ ସମୟରେ ଯେମିତି ମୋର ଶଯ୍ୟା, ଆସନ ପ୍ରଭୃତି ନିତ୍ୟବ୍ୟବହାର୍ଯ୍ୟ

ସାମଗ୍ରୀ ସୁଶୃଙ୍ଖଳିତ ଭାବେ ପ୍ରସ୍ତୁତ ଥିବ । ଏଥିରେ ଯେମିତି ଅନ୍ୟଥା ନ ହୁଏ ।

କୁନ୍ତଭୋଜ: ମହର୍ଷି ! କୁନ୍ତୀ ନାମରେ ମୋର ଯେଉଁ କନ୍ୟାଟି ଅଛି, ସିଏ ମନ ଦେଇ ଆପଣଙ୍କର ସବୁ ସେବା କରିବ । ତାହାର ଶୀଳ ସ୍ୱଭାବ ଦ୍ୱାରା ଆପଣ ନିଶ୍ଚୟ ସଂତୁଷ୍ଟ ହେବେ । ଆସିବା ହୁଅନ୍ତୁ । ମୋ ପ୍ରାସାଦକୁ ଲାଗି ଗୋଟିଏ ସୁଧା ଧବଳ ଅତିଥିଶାଳା ଅଛି । ସେଇଠି ଆପଣ ରହିବା ପାଇଁ ସବୁ ସୁବିଧା କରି ଦିଆଯିବ ।

*(ଦୁର୍ବାସା ଭିତରକୁ ଗଲେ । କୁନ୍ତଭୋଜ କୁନ୍ତୀଙ୍କୁ ଡାକିଲେ)*

କୁନ୍ତଭୋଜ: କୁନ୍ତୀ ! କୁନ୍ତୀ ! ଏଇଠିକି ଆସିଲୁ !

*(ତତ୍‌କ୍ଷଣାତ୍ ପ୍ରବେଶ କଲେ କୁନ୍ତୀ)*

ବତ୍ସେ ! ଏଇ ଯୋଉ ଦୀର୍ଘକାୟ ଗୌରବର୍ଣ୍ଣର ଯୁବକ ବ୍ରାହ୍ମଣ ଆସିଥିଲେ, ସେ ହେଉଛନ୍ତି ମହର୍ଷି ଦୁର୍ବାସା । ଆମର ପ୍ରାସାଦ ଆରପଟେ ଥିବା ସେଇ ସୁଧାଧବଳ ଅତିଥିଶାଳାରେ ସେ କିଛି କାଳ ଅତିଥିରୂପେ ରହିବେ । ମୁଁ କେବଳ ତୋ ଉପରେ ଭରସା କରି ତାଙ୍କ ସେବାର ଭାର ନେଇଛି । (ଆବହ ସଂଗୀତ) ତୁ ସର୍ବଦା ଏକାଗ୍ର ଚିତ୍ତରେ ମହର୍ଷିଙ୍କର ସେବା ପରିଚର୍ଯ୍ୟା କରିବୁ । ମୁଁ ତୋର ବାଲ୍ୟକାଳରୁ ଅସାଧାରଣ ସେବା ମନୋଭାବର ପରିଚୟ ପାଇସାରିଛି । ବ୍ରାହ୍ମଣଗଣ, ଗୁରୁବୃନ୍ଦ, ବଂଧୁବର୍ଗ, ମିତ୍ରବର୍ଗ, ସିଦ୍ଧାଦିବର୍ଗ ଏବଂ ମାତୃବର୍ଗ - ଏମିତିକି ଦାସଦାସୀ ଗଣଙ୍କ ପ୍ରତି ମଧ୍ୟ ତୋର ଅସାଧାରଣ ସ୍ନେହ ଅନୁକଂପା ରହିଛି । ହେ ଶୋଭାନାଙ୍ଗୀ ! ତୋର ସାଧ୍ୱୀବୃତ୍ତି ନିମିତ୍ତ ସମସ୍ତ ଭୃତ୍ୟଜନ ମଧ୍ୟ ତୋ ପ୍ରତି ଆକୃଷ୍ଟ ।

*(ଆବହ ସଂଗୀତ । କୁନ୍ତୀଭୋଜ କୁନ୍ତୀର ନିକଟତର ହେଲେ ଏବଂ କହିଲେ-)*

ଦୁଷ୍କୁଳରେ ସମ୍ଭୂତ କନ୍ୟାମାନେ ପ୍ରାୟତଃ ମୂର୍ଖ । ବିପରୀତ ଧର୍ମାଚରଣ କରିଥାନ୍ତି । ହେ ପୃଥା ! ତୁ ଶ୍ରେଷ୍ଠ କୁଳ ରାଜବଂଶରେ ଜନ୍ମ ଗ୍ରହଣ କରିଛୁ ଏବଂ ତୋର ଶାରୀରିକ ସୌନ୍ଦର୍ଯ୍ୟ ମଧ୍ୟ ଆସାଧାରଣ । ତୁ ତୋର ବଂଶ ରୂପ ଗୁଣ ଆଦି ସମସ୍ତ ସ୍ୱଭାବ ଦ୍ୱାରା ଶୋଭିତ । ହେ କଲ୍ୟାଣୀ ! ଏଇ ମହା ତପସ୍ୱୀ କୋପନ ସ୍ୱଭାବର ବ୍ରାହ୍ମଣ । ତାଙ୍କୁ ତୁ ସେବାରେ ସଂତୁଷ୍ଟ କରି ପାରିଲେ ଅନେକ କଲ୍ୟାଣ ଲାଭ କରିବୁ ।

କୁନ୍ତୀ: ମୁଁ ତାଙ୍କର କୌଣସି ଆଦେଶ ଅମାନ୍ୟ କରିବିନାହିଁ ପିତା !

କୁନ୍ତଭୋଜ: ସେ ଭିକ୍ଷାବୃତ୍ତି କରି ଚଳିବେ । ତୁ ତାଙ୍କ ପାଇଁ ରୋଷେଇ କରିବୁ । ସେ ଯଦି ନିୟମ ରକ୍ଷା ନ କରନ୍ତି... ସଂଧ୍ୟାରେ ଆସିବାକୁ କହି ରାତି ଅଧରେ ଆସନ୍ତି ?

କୁନ୍ତୀ: ମୁଁ ତାଙ୍କ ପାଇଁ ଅପେକ୍ଷା କରିବି ।

କୁନ୍ତଭୋଜ: ଯଦି ରାତିରେ ଆସିବାକୁ କହି ପାହାନ୍ତିଆରେ ଆସନ୍ତି ?

କୁନ୍ତୀ: ମୁଁ ରାତି ସାରା ଅନିଦ୍ରା ରହିବି ।

କୁନ୍ତଭୋଜ: ତ୍ରୁଟି କଲେ ବ୍ରାହ୍ମଣ କୋପ କରିବେ । ଗାଳିଦେବେ । ଶାସ୍ତି ଦେବେ ।

କୁନ୍ତୀ: ଶାସ୍ତି ଦିଅନ୍ତୁ । ମୁଁ ବିଚଳିତ ହେବି ନାହିଁ କି ବିରକ୍ତି ପ୍ରକାଶ କରିବି ନାହିଁ । ସେ କୌଣସି ନିୟମ ରକ୍ଷା ନ କଲେ ମଧ୍ୟ ମୁଁ କୌଣସି ସମୟରେ ତାଙ୍କର ସେବା ତ୍ୟାଗ କରି ଅନ୍ୟତ୍ର ଯିବି ନାହିଁ । ସେ ଯାହା କଲେ ସଂତୁଷ୍ଟ ହେବେ ମୁଁ ତାହା ହିଁ କରିବି । ଆପଣ ବ୍ରାହ୍ମଣଙ୍କୁ ଯେଭଳି ପ୍ରତିଶ୍ରୁତି ଦେଇଛନ୍ତି, ତାହା ମୁଁ ନିଶ୍ଚୟ ପାଳନ କରିବି ।

କୁନ୍ତଭୋଜ: ବେଶ ଭଲ କଥା । କିନ୍ତୁ ଗୋଟିଏ କଥା ମନେ ରଖିଥିବୁ । ଦୁର୍ବାସା ପ୍ରଜ୍ୱଳିତ ବ୍ରହ୍ମ ସ୍ୱରୂପ । ସେ ନିଜେ ସୂର୍ଯ୍ୟଙ୍କ ପରି ଉତପ୍ତ ଆଉ ଉଜ୍ୱଳ । ତାଙ୍କର ପରିଚର୍ଯ୍ୟା କରିବା ଯାହା ଅଗ୍ନି ଭିତରେ ପ୍ରବେଶ କରିବା ତାହା ।

କୁନ୍ତୀ: ମୁଁ ବୁଝି ପାରୁଛି ପିତା । ମୁଁ ନିଷ୍ଠାପର ଭାବେ ତାଙ୍କର ସେବା କରିବି ।

କୁନ୍ତଭୋଜ: ଏକମାତ୍ର ଶ୍ରୀକୃଷ୍ଣ ଏହି କୋପୀ ତପସ୍ୱୀଙ୍କୁ ସଂତୁଷ୍ଟ କରିପାରିଥିଲେ । କୃଷ୍ଣ ତାଙ୍କୁ କୌଣସି ମତେ କ୍ରୁଦ୍ଧ ବା ବିଚଳିତ କରିପାରିନଥିଲେ ।

କୁନ୍ତଭୋଜ: ଏଇତ ଋଷିବର ଆସିଲେଣି । ମୁଁ ତାଙ୍କ ସାଙ୍ଗରେ ତୋର ପରିଚୟ କରାଇ ଦେଉଛି ।

(ପ୍ରବେଶ କଲେ ଦୁର୍ବାସା)

ଏଇ ମୋର କନ୍ୟା ମହର୍ଷି । ଆପଣଙ୍କ ସେବା ଯତ୍ନ ନେବାର ଦାୟିତ୍ୱ ତାକୁ ଦିଆଯାଇଛି । ତଥାପି କନ୍ୟାଟି ମୋର ଅତି କୋମଳମତି । ସେବା କରୁ କରୁ ଯଦି ତାର ଦୋଷ ହୋଇଯାଏ ଆପଣ ତାକୁ ଅଭିଶାପ ଦେବେ ନାହିଁ । କ୍ଷମା କରିଦେବେ ।

ଦୁର୍ବାସା: ତଥାସ୍ତୁ । ଚାଲ କୁନ୍ତଭୋଜ । ତମର ଦୀକ୍ଷା ନେବାର ସମୟ ହୋଇଗଲାଣି । ଆସ କୁନ୍ତୀ । ତୁମ ଅତିଥିଶାଳା କେଉଁଠି ଦେଖେଇଦବ ।

(ସମସ୍ତଙ୍କର ପ୍ରସ୍ଥାନ) (ମଂଚ ଅଂଧକାର)

# ଦୃଶ୍ୟ-୭

*ହସ୍ତିନାର ରାଜସିଂହାସନରେ ବସିଛନ୍ତି ମହାରାଜ ପାଣ୍ଡୁ । ଭୀଷ୍ମ ବ୍ୟସ୍ତ ଭାବରେ ପଦଚାଳନା କରୁ କରୁ କହୁଛନ୍ତି:*

ଭୀଷ୍ମ: ମହାରାଜ ପାଣ୍ଡୁ! ଧୃତରାଷ୍ଟ୍ର କିଛି କରିପାରୁନାହିଁ ବୋଲି ତୁମେ ରାଜସିଂହାସନରେ ବସିଲ । କିନ୍ତୁ ଲାଭ କଣ ହେଲା ? ତୁମେ ସିଂହାସନରେ ବସିଲା ପରେ ରାଜକୋଷ ଶୂନ୍ୟ ହୋଇଗଲା । ଏହା ହସ୍ତିନା ପାଇଁ ଏକ ସଂକଟ । ଗାନ୍ଧାର ରାଜ ସୁବଳ ଯଦି ମୋ ପ୍ରସ୍ତାବରେ ରାଜି ହୁଅନ୍ତି, ଆଗରେ ଧୃତରାଷ୍ଟ୍ରର ବିବାହ ଉତ୍ସବ ଅନୁଷ୍ଠିତ ହେବ । ତାପରେ ତୁମର ବିବାହ । ତାଛଡ଼ା ଯଦି ଗାନ୍ଧାର ରାଜ୍ୟ ସହ ଆମର ପାରିବାରିକ ସଂପର୍କ ସ୍ଥାପିତ ହୁଏ, ମତେ ଇନ୍ଦ୍ର, ବରୁଣ ଓ ପବନ ଦେବତାଙ୍କ ସାଙ୍ଗରେ ଯୁଦ୍ଧକରି ଗାନ୍ଧାରକୁ ସୁରକ୍ଷା ଦେବାକୁ ପଡ଼ିବ । ଏତେ ସବୁ କରିବା ପାଇଁ ଅର୍ଥ କାହିଁ ?

ପାଣ୍ଡୁ: ମୁଁ ସୈନ୍ୟମାନଙ୍କୁ ଧରି ରାଜ୍ୟ ଜୟ କରିବା ପାଇଁ କିଛିଦିନ ବାହାରିକୁ ଚାଲିଯିବି । ଜ୍ୟେଷ୍ଠଭ୍ରାତା ଧୃତରାଷ୍ଟ୍ରଙ୍କ ପାଖରେ ଆପଣ ଠିଆ ହେଲେ ସେ ରାଜ୍ୟକାର୍ଯ୍ୟ ପରିଚାଳନା କରିବେ ।

ଭୀଷ୍ମ: ତୁମେ ସେୟା କର ପାଣ୍ଡୁ । ହସ୍ତିନା ସାମ୍ରାଜ୍ୟର ବିସ୍ତାର କର । ସମସ୍ତେ ଜାଣନ୍ତି ମହାରାଜ ପାଣ୍ଡୁ ଜଣେ ପ୍ରସିଦ୍ଧ ବୀର, ବିଗତ ଦିନମାନଙ୍କରେ ତମେ ବହୁ ଯୁଦ୍ଧରେ ଜୟଲାଭ କରି ହସ୍ତିନାର ରାଜ ଭଣ୍ଡାରକୁ ସମୃଦ୍ଧ କରିଛ । ଯୁଦ୍ଧ ପାଇଁ ଅମର ସେନା ପ୍ରସ୍ତୁତ ତ ?

ପାଣ୍ଡୁ: ସୈନ୍ୟମାନଙ୍କୁ ମୁଁ ଆଦେଶ ଦେଇଛି । ସେମାନେ ପ୍ରତିଦିନ ସମରାଭ୍ୟାସ କରୁଛନ୍ତି । ଆପଣ ଭ୍ରାତା ଧୃତରାଷ୍ଟ୍ରଙ୍କୁ ସାହାଯ୍ୟ କରନ୍ତୁ ତାହେଲେ ମୁଁ ନିଶ୍ଚିନ୍ତରେ ରାଜ୍ୟ ବିଜୟ ପାଇଁ ଚାଲିଯିବି ।

ଭୀଷ୍ମ: ମୋର ପ୍ରଥମ କର୍ତ୍ତବ୍ୟ ଧୃତରାଷ୍ଟ୍ର ପାଇଁ ଗୋଟିଏ କନ୍ୟା ଯୋଗାଡ଼ କରି ତାର ବିବାହ ବ୍ୟବସ୍ଥା କରିବା । ବଂଶ ରକ୍ଷା କରିବା ଆମ ପରିବାରର ପ୍ରଧାନ ସମସ୍ୟା । ପ୍ରଥମେ ଧୃତରାଷ୍ଟ୍ରର ବିବାହ କାର୍ଯ୍ୟ ସଂପାଦିତ ହେଲେ ଆରବର୍ଷ ତୁମ ପାଇଁ ଆର୍ଯ୍ୟାବର୍ତ୍ତର ଜଣେ ଶ୍ରେଷ୍ଠ ରାଜକନ୍ୟା ଠିକ୍ କରିବି । ଆଜି ହେଲା ରବିବାର । ତମେ ବୁଧବାର ସକାଳୁ ସୈନ୍ୟ ମାନଙ୍କୁ ନେଇ ତମ ଅଭିଯାନରେ ବାହାରିଯାଅ ।

ପାଣ୍ଡୁ: ଯଥା ଆଜ୍ଞା ଜ୍ୟେଷ୍ଠପିତା ।

*(ଉଭୟଙ୍କ ପ୍ରସ୍ଥାନ, ମଂଚ ଅଂଧକାର)*

## ଦୃଶ୍ୟ-୮

*ଋଷି ଦୁର୍ବାସାଙ୍କ ଲାଗି ଉଦ୍ଦିଷ୍ଟ ଅତିଥିଶାଳା । ମଧ୍ୟରାତ୍ରି, ଝରିଆଡ଼ ଶୁନଶାନ୍ ଆବହ ସଂଗୀତ, କୁନ୍ତୀ (୧୨ବର୍ଷର ବାଳିକା) ଋଷିଙ୍କ ଆଗମନ ପାଇଁ ଅପେକ୍ଷା କରି ବସିଛି । କ୍ଳାନ୍ତ ଓ ଅବସନ୍ନ ଅବସ୍ଥାରେ ପ୍ରବେଶ କଲେ ଋଷି ଦୁର୍ବାସା । କୁନ୍ତୀ ଠିଆ ହୋଇ ପଡ଼ିଲା ।*

ଦୁର୍ବାସା: ଓଃ ! ଫେରୁ ଫେରୁ ଆଜି ଡେରି ହୋଇଗଲା । ସମ୍ଭବତଃ ଏହା ଅର୍ଦ୍ଧରାତ୍ରି । ଓଃ ! ପ୍ରଚଣ୍ଡ କ୍ଷୁଧା !
(ପୃଥାକୁ ଲକ୍ଷ୍ୟକରି) ଶୋଭନାଙ୍ଗୀ ! ମୋ ପାଇଁ କଣ ଖାଦ୍ୟ ବ୍ୟବସ୍ଥା କରିଛ ?

କୁନ୍ତୀ: ମହର୍ଷି ! ଆପଣ ସଂଧ୍ୟାରେ ଫେରି ଆସିବେ ବୋଲି କହିଥିଲେ । କିନ୍ତୁ ଫେରୁଛନ୍ତି ମଧ୍ୟରାତ୍ରିରେ । ବର୍ତ୍ତମାନ ମୁଁ ଗରମ ଖାଦ୍ୟ କୋଉଠୁ ଯୋଗାଡ଼ କରିବି ଯେ ? ପାକଶାଳାରୁ ତ ସବୁ ପାକକର୍ମୀ ଚାଲିଗଲେଣି !!

ଦୁର୍ବାସା: (ରାଗି) ମୂର୍ଖ ରାଜକନ୍ୟା ! ମହର୍ଷି ଦୁର୍ବାସା ତୁମ ପିତା ରାଜା କୁନ୍ତୀଭୋଜଙ୍କର ଅତିଥି । ସେ କଣ ଆଜି ରାତିରେ ଉପବାସ ରହିବ ? ନା ଶୀତଳ ଖାଦ୍ୟ ସେବନ କରିବ ?

କୁନ୍ତୀ: ଏହା କିପରି ସମ୍ଭବ ମାନ୍ୟବର ? ଆପଣଙ୍କ ପାଇଁ ପାକକର୍ମୀମାନେ ଖାଦ୍ୟ ରଖି ଘୋଡ଼େଇ ନେଇ ଚାଲିଯାଇଛନ୍ତି ।

ଦୁର୍ବାସା: ସେ ଖାଦ୍ୟ ଥଣ୍ଡା ହୋଇଯାଇଥିବ । ଦୁର୍ବାସା ବ୍ରାହ୍ମଣ କଣ ଶୀତଳ ହୋଇ ଯାଇଥିବା ଖାଦ୍ୟ ଖାଇବ ?

କୁନ୍ତୀ: ମୁଁ ଆଉ କଣ କରିପାରିବି ଋଷିବର ? ସେମାନେ ସମସ୍ତେ ରାତିର ଦ୍ୱିତୀୟ ପ୍ରହର ଯାଏଁ ଅପେକ୍ଷା କଲେ । ତାପରେ ପାକଶାଳା ବନ୍ଦ କରି ଚାଲିଗଲେ । ଆପଣ ଯଦି ଚଳେଇ ନିଅନ୍ତେ ।

ଦୁର୍ବାସା: ପ୍ରଥମତଃ ସେ ଖାଦ୍ୟ ଥଣ୍ଡା । ଦ୍ୱିତୀୟତଃ ମତେ ଅବଜ୍ଞା କରି ତମର ରୋଷେୟାମାନେ ଚାଲିଗଲେ । ଏହା ମୋ ପାଇଁ ଘୋର ଅପମାନ । ମୁଁ ଯାଉଛି । ବିନାଖାଦ୍ୟରେ ଗଂଗାଜଳ ପିଇ ବିଶ୍ରାମ କରିବି ।

କୁନ୍ତୀ: ତା କିପରି ସଂଭବ ମହର୍ଷି ? ଆପଣଙ୍କ ପାଇଁ ମୁଁ ସୁମିଷ୍ଟ ଫଳ ଆୟୋଜନ କରି ରଖିଛି । ଅନ୍ତତଃ ତାକୁ ଖାଇ ଆପଣ ନିଦ୍ରା ଯାଆନ୍ତୁ । ମୁଁ ଫଳ ନେଇ ଆସୁଛି । (ଚାଲିଗଲା ଭିତରକୁ)

ଦୁର୍ବାସା: ଦେଖୁଛି । ଏ ଭୋଜରାଜାମାନଙ୍କର ସଂସ୍କାର ନାହିଁ । ରାଜ ପ୍ରାସାଦର କର୍ମଚାରୀମାନଙ୍କ ଉପରେ ନିୟଂତ୍ରଣ ନାହିଁ । ସଂହିତା ଯୁଗ ଗଲା, ସତ୍ୟ ଯୁଗ ଗଲା... ତ୍ରେତୟା ଯୁଗ ଗଲା... ରାଜାମାନେ କ୍ଷତ୍ରିୟ ଧର୍ମ ରକ୍ଷା କରୁଥିଲେ । ଅଶ୍ୱାରୋହୀ, ପଦାତିକମାନଙ୍କଠାରୁ ଆରମ୍ଭ କରି ଦାସ, ଦାସୀ, କଟୁଆଳ, ପାକକର୍ମୀ ସମସ୍ତେ ନିୟଂତ୍ରଣରେ ଥିଲେ । ହେଲେ ଯେ ଦ୍ୱାପର ଯୁଗରେ, ସମସ୍ତେ ଯେ ମଗ୍ନ ଏଠି ନିଜ ନିଜ ଦୁଃଖର ରତିରେ । ଏଇ ଦ୍ୱାପରରେ ପକ୍ଷୀର କାକଳୀ ମଧ୍ୟ ହଜିଯାଉଛି ଦିନାନ୍ତର ଉଦାସୀ ଡେଣାରେ । ଦ୍ୱାପରରେ ଏମିତି ଈଶ୍ୱର ଏଠି ସବୁ ଭୟହୀନ ଭକ୍ତିହୀନ ମୁକୁଳା ମନ୍ଦିର । ହାତପାତି ମାଗିଲେ ବି ସେ ମନ୍ଦିରୁ ମିଳେ ନାହିଁ ପାଖୁଡ଼େ ତୁଳସୀ । ହୃଦଖୋଲି ଡାକିଲେ ବି ଫିଟେ ନାହିଁ ପଥର ଗୁମୁଟି । ଅମୃତ ବି ଦିଅଁ ପାଇଁ ଲାଗୁଛି ଅରୁଚି । ମୁଁ ତ ଏକ ଉଜାଗର ରାତିର ତାପସ । କିପରି ଏ ରାଜ ଜେମା ହେବ ମୋର ଇଚ୍ଛାର ସାରସ ?

*(ପ୍ରବେଶ କଲା କୁନ୍ତୀ ହାତରେ ଫଳ ସଜା ହେଇ ରହିଥିବା ଏକ ବଡ଼ ସୁବର୍ଣ୍ଣର ଥାଳୀ)*

କୁନ୍ତୀ: ଆପଣ ଏ ସୁମିଷ୍ଟ ଫଳ ଖାଇ ନିଦ୍ରା ଯାଆନ୍ତୁ ରଷିବର । ଏ ନିର୍ବୋଧ ବାଳିକାର ଅପରାଧ କ୍ଷମା କରନ୍ତୁ ।

(କୁନ୍ତୀ ଦୁର୍ବାସାଙ୍କୁ ଥାଳିଟି ବଢ଼େଇ ଦେଇ ଦୁର୍ବାସାଙ୍କ ପାଦତଳେ କୁମାରୀ ସୁଲଭ ସରଳତା ଓ ସୌଜନ୍ୟ ନେଇ ବସି ପଡ଼ିଲା)

ଦୁର୍ବାସା: (କୃତ୍ରିମ କୋପରେ) ନା, ମତେ ଦୀର୍ଘକାଳ କ୍ଷୁଧା ଜର୍ଜରିତ କରି ରଖିଥିବାରୁ ତୁମେ ଶାସ୍ତି ପାଇବ ରାଜ ଜେମା !

କୁନ୍ତୀ: ଯଥା ଆଜ୍ଞା ରଷିବର । (ସ୍ମିତ ହସି) ମୁଁ ମଥାପାତି ଆପଣ ଦେଉଥିବା ସମସ୍ତ ଶାସ୍ତି ଗ୍ରହଣ କରିବି । ଦିଅନ୍ତୁ ଶାସ୍ତି ।

ଦୁର୍ବାସା: ତା ହେଲେ ଏଠାରେ କାନଧରି ଶହେ ଆଠ ଥର ବସ ଉଠ ହୁଅ ।

କୁନ୍ତୀ: କଣ କହିଲେ ରଷିବର ?

ଦୁର୍ବାସା: ଶହେ ଆଠଥର ବସ ଉଠ ହୁଅ । ଏଇଠି । ବର୍ତ୍ତମାନ, ରାଜଜେମା ଫାଜଜେମା ମୁଁ କିଛି ଜାଣିନି । ମାର୍ ବୈଠକି ! !

କୁନ୍ତୀ: ଯଥା ଆଜ୍ଞା ! (ଏକ ସ୍ୱତଂତ୍ର ଆଲୋକରେ ବସ ଉଠ ହେଲା କୁନ୍ତୀ । ଦୁର୍ବାସା ଖୁବ୍ ଜୋର୍‌ରେ ହସି ଉଠିଲେ ତାଚ୍ଛଲ୍ୟ କରି)

କୁନ୍ତୀ: (ବସ୍ ଉଠ୍ ହେଉ ହେଉ) ରାତିସାରା ମୁଁ ବସ୍ ଉଠ୍ ହେଲେ ଯଦି ଆପଣଙ୍କର କ୍ରୋଧ ଶାନ୍ତ ହେବ ତାହେଲେ ମୁଁ ରାତିସାରା ଏମିତି ବସ୍ ଉଠ୍ ହେଉଥିବି ଋଷିବର । ମୁଁ କେବଳ ରାଜା ଶୂରସେନଙ୍କ କନ୍ୟା ପୃଥା ନୁହେ - ମୁଁ ତାଙ୍କ ପିଇସି ପୁଅ ଭାଇ କୁନ୍ତଭୋଜଙ୍କ ଦତ୍ତକନ୍ୟା କୁନ୍ତୀ । ବ୍ରାହ୍ମଣ ଋଷିଙ୍କ ଆଜ୍ଞା ନିଶ୍ଚୟ ପାଳନ କରିବି ।

ଦୁର୍ବାସା: ନିଶ୍ଚୟ ପାଳନ କରିବୁ ? ଏଁ ? (ତାଚ୍ଛଲ୍ୟ କରି ହସିଲେ) ତା ହେଲେ ତୁ ରାଜକନ୍ୟା ନୋହୁ । ଦାସୀ ! ଦୁର୍ବାସା ବ୍ରାହ୍ମଣର ଦାସୀ !

*(ପୁଣିଥରେ ହସି ଉଠିଲେ । ଅଂଧାର)*

## ଦୃଶ୍ୟ-୯

*ମଂଚ ଆଲୋକିତ ହେଲା ଗୋଟିଏ ରଥ ଗଡୁଥିବାର ଘର୍ଘର ଶବ୍ଦରେ । କିନ୍ତୁ ଯେଉଁ ରଥଟି ଆସିଲା ତାହା ହସ୍ତିନା ନଗରର ସୈନ୍ୟ ମାନଙ୍କ ଶରୀର ମାନଙ୍କ ଦ୍ୱାରା ନିର୍ମିତ । ସୈନ୍ୟମାନେ ହିଁ ଚକ୍ରାକାରରେ ଗଡୁଛନ୍ତି । ସୈନ୍ୟମାନେ ହିଁ ରଥର ଶରୀର । ସୈନ୍ୟ ମାନେ ହିଁ ରଥର ଘୋଡ଼ା । ଯେଉଁ ରଥଟି ମଂଚରେ ପ୍ରବେଶ କଲା ତାହା ଦୁଇଟି ଘୋଡ଼ା ଦ୍ୱାରା ଟଣା ଯାଉଥିବା ରଥ ଓ ରଥରୁ ଓହ୍ଲାଇଲେ ଗାନ୍ଧାର ଯୁବରାଜ ଶକୁନି । ଯେଉଁମାନେ ରଥର ଚକ, ଘୋଡ଼ା ଏବଂ ରଥର ଶରୀର ଭୂମିକାରେ ଅଭିନୟ କରୁଥିଲେ ସେମାନେ ରୂପାନ୍ତରିତ ହୋଇଗଲେ ଗାନ୍ଧାର ରାଜ୍ୟର ପାରିଷଦ ବର୍ଗରେ । ଏମାନେ ପାଖାପାଖି ଆଠଜଣ ଅଭିନେତା ବିଭିନ୍ନ ସମୟରେ ଏହିପରି ନାଟ୍ୟକର୍ମରେ ନିୟୋଜିତ ହୋଇ ରହିବେ । ପ୍ରାସାଦ ଉପରେ ବିରାଜମାନ ହେଲେ ଗାନ୍ଧାର ରାଜ ସୁବଳ । ସାଙ୍ଗରେ ଗାନ୍ଧାର ରାଜକନ୍ୟା ଗାନ୍ଧାରୀ ।*

ସୁବଳ: ଆସ ଯୁବରାଜ ଶକୁନି, ସୁସ୍ୱାଗତ ! ମହାରଥୀ ଭୀଷ୍ମ ମୋ ପତ୍ର ପାଇ ଆମ ପ୍ରସ୍ତାବରେ କଣ ରାଜିହେଲେ ?

ଶକୁନି: ପ୍ରଣାମ ପିତାଶ୍ରୀ !

ସୁବଳ: ପ୍ରଣାମ । କଣ କହିଲେ ଭୀଷ୍ମ ? ଆମ ପ୍ରସ୍ତାବରେ ରାଜି ହେଲେ ?

ଶକୁନି: କେବଳ ରାଜି କଣ ପିତାଶ୍ରୀ ? ବାଜିମାତ୍ କରିଦେଲେ ।

ସୁବଳ: କଣ ଏମିତି ବାଜିମାତ୍ ହୋଇଗଲା ପୁତ୍ର ?

ଶକୁନି: ମହାରଥୀ ଭୀଷ୍ମ କହିଲେ – ଗାନ୍ଧାର ସାଙ୍ଗରେ କେବଳ କୂଟନୈତିକ ସଂପର୍କ ନୁହେଁ, ବୈବାହିକ ସଂପର୍କ ମଧ୍ୟ ସ୍ଥାପନ କରିବା ପାଇଁ ହସ୍ତିନାପୁର ଆଗ୍ରହୀ ।

ସୁବଳ: ବୈବାହିକ ସଂପର୍କ ? ଅର୍ଥାତ୍ ?

ଶକୁନି: ହସ୍ତିନାର ଜ୍ୟେଷ୍ଠପୁତ୍ର ଧୃତରାଷ୍ଟ୍ର ଏ ପର୍ଯ୍ୟନ୍ତ ଅବିବାହିତ । ମହାରଥୀ ଭୀଷ୍ମ ଚାହୁଁଛନ୍ତି ଆମ ଗାନ୍ଧାରୀକୁ ତାଙ୍କ ପ୍ରାସାଦକୁ ନେଇଯିବେ ପୁତ୍ରବଧୂ ରୂପେ ।

ସୁବଳ: ଗାନ୍ଧାର ଆମର ଗୋଟିଏ କ୍ଷୁଦ୍ର ରାଜ୍ୟ । ତେଣୁ ଆମ ପାଇଁ ଏ ପ୍ରସ୍ତାବ ପରମ ସୌଭାଗ୍ୟ ସ୍ୱରୂପ । ଯୁବରାଜ ! ତମେ କଣ କହିଲ ?

ଶକୁନି: ଏ ସୁଯୋଗ ମୁଁ କିପରି ଛାଡ଼ିଥାନ୍ତି ପିତାଶ୍ରୀ ! କଥା ଦେଇ ଆସିଛି ।

ସୁବଳ: ଆମ ଗାନ୍ଧାରୀ ତାହେଲେ ହସ୍ତିନାର ପାଟରାଣୀ ହେବ ?

ଗାନ୍ଧାରୀ: କାହିଁକି ନହେବି ପିତାଶ୍ରୀ? ମୁଁ କଣ ହସ୍ତିନାର ପାଟରାଣୀ ହେବାପାଇଁ ଅଯୋଗ୍ୟା? ମୁଁ କଣ ସୁନ୍ଦରୀ ନୁହେଁ?

ସୁବଳ: ମହାରଥୀ ଭୀଷ୍ମ ସବୁବେଳେ ଆର୍ଯ୍ୟ ସଂପ୍ରଦାୟର ସପକ୍ଷରେ ଥାଆନ୍ତି। ଗାନ୍ଧାର ଦେଶ ନିର୍ଭେଜାଲ ଆର୍ଯ୍ୟମାନଙ୍କର ଦେଶ। ଏକଥା ସେ ଜାଣନ୍ତି।

ଶକୁନି: ଭଗିନୀ ଗାନ୍ଧାରୀ! ଏ କଥା ମଧ୍ୟ ମନେରଖ। ହସ୍ତିନାର ଜ୍ୟେଷ୍ଠ ରାଜପୁତ୍ର ଦେଖିବାକୁ ଯେମିତି ସୁନ୍ଦର ଗଠନ, ସେମିତି ମଜବୁତ୍, ଓ ସ୍ୱାସ୍ଥ୍ୟବାନ କ୍ଷତ୍ରିୟ। କିନ୍ତୁ ଟିକିଏ...

ସୁବଳ: କିନ୍ତୁ କଣ ପୁତ୍ର?

*(ପ୍ରବେଶ କଲେ ସୂତ୍ରଧରମାନେ ଏବଂ କହିଲେ-)*

ସୂତ୍ରଧରଗଣ: କିନ୍ତୁ! କିନ୍ତୁ ରେ ଲଟକି ଯାଏ ଜୀବନ। କିନ୍ତୁରେ ଅଟକି ଯାଏସବୁ ସତ୍ୟ, ନିର୍ଭେଜାଲ ଭେଜାଲ ହୁଏ ଏବଂ ନିଷ୍ଠା ହୁଏ ପ୍ରତାରଣା। ଏହି ଗୋଟିଏ କିନ୍ତୁ ପାଇଁ ଗାନ୍ଧାରୀ ଜୀବନ ସାରା ହୋଇଯିବ ଗୋଟେ ଅଂଧ ପୁତୁଳି। କିନ୍ତୁ ଏମିତି ଏକ ଦୁର୍ବିସହ ଯାତ୍ରାର ଇଏ ପ୍ରଥମ ଅର୍ଗଳି।

(ସୂତ୍ରଧରମାନେ ଚାଲିଗଲେ)

ଶକୁନି: ସବୁ କିନ୍ତୁର ଉତ୍ତର କଣ ବିବାହ ଆଗରୁ ମିଳିପାରିବ? ବର୍ତ୍ତମାନ ପାଇଁ ଆମେ କେବଳ ଜାଣିବା ଯେ ଆମ୍ଭ ଗାନ୍ଧାର ରାଜକନ୍ୟା ହସ୍ତିନାର ପାଟରାଣୀ ହେବାକୁ ଯାଉଛି। ପରମ ସୌଭାଗ୍ୟ ତୋର ଗାନ୍ଧାରୀ।

ଗାନ୍ଧାରୀ: ହସ୍ତିନାର ରାଜପୁତ୍ର ନିଶ୍ଚୟ ଜଣେ ବ୍ୟସ୍ତ ସମ୍ରାଟ ହୋଇଥିବେ?

ଶକୁନି: ଅବଶ୍ୟ ରାଜ୍ୟ ପରିଚାଳନା ଏବଂ ସାମ୍ରାଜ୍ୟ ବିସ୍ତାର - ଉଭୟ କାର୍ଯ୍ୟରେ ହସ୍ତିନାର ରାଜା ଓ ଯୁବରାଜ ବ୍ୟସ୍ତ ଅଛନ୍ତି।

ଗାନ୍ଧାରୀ: ତା'ହେଲେ ବିବାହ କରିବା ପାଇଁ ସେ ଏତେ ବାଟ ଆସି ଏତେ ପଥଶ୍ରମ କରିବେ କାହିଁକି? ମତେ ସୈନ୍ୟ ଓ ପାରିଷଦ ବର୍ଗଙ୍କ ସହ ହସ୍ତିନାପୁରକୁ ଯାଇ ସେଇଠି ବିବାହ କରିବାର ସୁଯୋଗ୍ୟ ଦିଅନ୍ତୁ ପିତାଶ୍ରୀ!

ସୁବଳ: କିନ୍ତୁ ଇନ୍ଦ୍ର, ବରୁଣ ଓ ପବନ ଦେବତା ଯେ ଗାନ୍ଧାର ଆକ୍ରମଣ କରିବାପାଇଁ ଉଦ୍ୟତ।

ଶକୁନି: ସେମାନେ କିଛି କରିପାରିବେ ନାହିଁ। ସ୍ୱୟଂ ଭୀଷ୍ମ ଯେଉଁ ବିବାହର କର୍ତ୍ତା, ସେଇଠି ଇନ୍ଦ୍ର ଓ ବରୁଣମାନେ କଣ କରି ପାରିବେ ପିତାଶ୍ରୀ? ଆପଣ ଗାନ୍ଧାରୀକୁ ଅନୁମତି ଦିଅନ୍ତୁ। ସେ ଅଶ୍ୱପୃଷ୍ଠରେ ଯାଇ ହସ୍ତିନା ପ୍ରାସାଦରେ

ଅବତୀର୍ଣ୍ଣା ହେବେ । ଆପଣ ତୁରନ୍ତ ଦୂତ ପ୍ରେରଣ କରି ଏକଥା ଜଣେଇ ଦିଅନ୍ତୁ ମହାରଥୀ ଭୀଷ୍ମଙ୍କ ନିକଟକୁ ।

ସୁବଳ: ହସ୍ତିନାପୁରକୁ ଯୌତୁକରେ ଆମେ କଣ ବା ଦେଇ ପାରିବା ?

ଗାନ୍ଧାରୀ: ଯୌତୁକ ସଂପର୍କରେ ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ପିତାଶ୍ରୀ । ତମର କ୍ଷତ୍ରିୟ କନ୍ୟା ଗାନ୍ଧାରୀ ନିଜେ ଅଶ୍ୱପୃଷ୍ଠରେ ବସି ହସ୍ତିନାକୁ ଯିବ । ମୋ ସାଙ୍ଗରେ ଭ୍ରାତା ଶକୁନି ଏବଂ ପାରିଷଦବର୍ଗ, ସୈନ୍ୟ ସାମନ୍ତ ସବୁ ଯିବେ । ଆପଣ ଚିଂତା କରନ୍ତୁ ନାହିଁ ।

ସୁବଳ: ଚିନ୍ତା କରୁଛି ଏଇଥିପାଇଁ ଗାନ୍ଧାରୀ । ଏ୍ ଅବସ୍ଥାରେ ମୁଁ ଗାନ୍ଧାର ଛାଡ଼ି ହସ୍ତିନାକୁ ଯିବା ସଂଭବ ହୋଇନ ପାରେ ।

ଗାନ୍ଧାରୀ: ତା କିପରି ହେବ ପିତାଶ୍ରୀ ? କନ୍ୟାଦାନ କରିବ କିଏ ?

ସୁବଳ: (ଚିନ୍ତାକରି) ମୁଁ ଯିବି ଗାନ୍ଧାରୀ । ନିଶ୍ଚୟ ଯିବି । ଏଇ ସୁଯୋଗରେ ମହାରଥି ଭୀଷ୍ମଙ୍କ ସହ ବ୍ୟକ୍ତିଗତ ସାକ୍ଷାତ ହେବ ଏବଂ ହସ୍ତିନାକୁ ନିଜ ଆଖିରେ ଦେଖିବାର ସୌଭାଗ୍ୟ ମିଳିବ । ଆସ, ରାଜ ପୁରୋହିତଙ୍କୁ ଡ଼କାଇ ଶୁଭଲଗ୍ନ ବାହାର କରିବା । ଶୁଭସ୍ୟ ଶୀଘ୍ରମ୍

*(ମଂଚ ଅଂଧାର)*

# ଦୃଶ୍ୟ-୧୦

*ଦୁର୍ବାସା ଗୋଟିଏ ଥାଳିରେ କିଛି ଖାଦ୍ୟ ଖାଇ ଖାଇ ପ୍ରବେଶ କଲେ । ପଛରେ ଗୋଟିଏ ଶୂନ୍ୟଥାଳି ଉପରେ ଗୋଟିଏ ସୁବର୍ଣ୍ଣର ଗିଲାସରେ ପାଣି ଧରି ଚାଲୁଛନ୍ତି କୁନ୍ତୀ ।*

ଦୁର୍ବାସା: ଛି ଛି ଛି - ଏ ଗୁଡ଼ା ଅଖାଦ୍ୟ । କିଏ ରୋଷେଇ କରିଛି ?

କୁନ୍ତୀ: ଆପଣଙ୍କ ଆଜ୍ଞାଧୀନା ଏଇ କୁନ୍ତୀ ଋଷିବର !

ଦୁର୍ବାସା: ତୁମେ କଣ ପାକକର୍ମ ଜାଣ ସୁନ୍ଦରୀ ?

କୁନ୍ତୀ: କେମିତି ଜାଣିବି ଋଷିବର ? ମୁଁ ଯେ ମାତୃହୀନ । ପିତା ଶୂରସେନ ମତେ ପରିତ୍ୟାଗ କରିଛନ୍ତି । ମୁଁ ଆପଣଙ୍କ ସେବିକା ଭାବରେ ପାକଶାଳାକୁ ଯାଇ, ପାକକର୍ମୀମାନଙ୍କ ସାହାଯ୍ୟ ନେଇ ଏ ଖାଦ୍ୟ ପ୍ରସ୍ତୁତ କରିଛି । ଏହା ଋଷିବରଙ୍କ ପାଇଁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ ମିଷ୍ଟାନ୍ନ । ଗୋ-ଘୃତରେ ପ୍ରସ୍ତୁତ ।

ଦୁର୍ବାସା: ଅଖାଦ୍ୟ ! ପାକକଳାରେ ତୁମର ଆଦୌ ପ୍ରବେଶ ନାହିଁ । ତୁମେ ଜଣେ ଆଳସ୍ୟ ପରାୟଣା ରାଜକନ୍ୟା । କୌଣସି କଳା ଶିଖିବାରେ ଆଗ୍ରହ ନାହିଁ ।

କୁନ୍ତୀ: ଅଛି ଋଷିବର ! ମୁଁ ନୃତ୍ୟକଳାରେ ପାରଙ୍ଗମ, କିନ୍ତୁ ମୁଁ ଏଇଠି ଧାତ୍ରୀ ଆଉ ଦାସୀ ମାନଙ୍କସାଙ୍ଗରେ ବଡ଼ ହେଇଛିତ ! ସେଥିପାଇଁ ହୁଏତ ଅଳସେଇ ହୋଇଯାଇଛି । କ୍ଷମା କରିବେ !

ଦୁର୍ବାସା: *(କିଛି ସମୟ ରହିଁଲେ କୁନ୍ତୀକୁ କୁନ୍ତୀ ରାଗୁଛି କି ନାହିଁ ପରୀକ୍ଷା କରିବା ପାଇଁ)* କିଛି ସୈନ୍ଧବ ଲବଣ ଆଉ କିଛି ଗୋଲମରିଚ୍ ଚୂର୍ଣ୍ଣ ନେଇ କି ଆସ !

କୁନ୍ତୀ: ଯଥା ଆଜ୍ଞା ! (ଚାଲିଗଲା । କିଛି ସମୟପରେ)

ଦୁର୍ବାସା: କୁନ୍ତୀ ସୁନ୍ଦରୀ ବୋଲି ବହୁ ବ୍ରାହ୍ମଣ ଓ ଋଷି ତାର ସେବା ପାଇଛନ୍ତି । ସୁନ୍ଦରୀ ଭାବରେ ଭାରତବର୍ଷରେ ତାର ନାମ ଶୀର୍ଷରେ ଅଛି ବୋଲି ଲୋକେ କହୁଛନ୍ତି । ମୁଁ ତାକୁ ପରୀକ୍ଷା କରିବା ପାଇଁ ପଚାରିଦେଲି, "ଏ ଖାଦ୍ୟ କିଏ ରୋଷେଇ କରିଛି !" ପ୍ରକୃତରେ ଭାରି ସ୍ୱାଦିଷ୍ଟ ହୋଇଛି । ମୁଁ କେବଳ ତାକୁ ପରୀକ୍ଷା କରୁଥିଲି ! କିନ୍ତୁ ଏ କ୍ଷତ୍ରିୟ କନ୍ୟା କଣ କହୁଛି ମୋ ପାଇଁ ରୋଷେଇ କରିଛି ବୋଲି !! ଦୁର୍ବାସା କଣ କ୍ଷତ୍ରିୟ କନ୍ୟାର ରୋଷେଇ ଖାଏ ? ମୁଁ ଖାଉଛି । ଏ ଅପରାଧ ତାର । ଏ ଅପରାଧ ଅକ୍ଷମଣୀୟ !!

(ଦୁର୍ବାସା ପୁଣି କ୍ରୋଧ ପ୍ରକାଶ କଲେ) ନା (ଡାକିଲେ) ନିର୍ବୋଧ ବାଳିକା ! କେତେ ଡେରି ହେଉଛି ?

କୁନ୍ତୀ: ସୈନ୍ଧବ ଲବଣ ଆଉ ଗୋଲମରିଚ ଚୂର୍ଣ୍ଣ ଆଣିବା ପାଇଁ ?

କୁନ୍ତୀ: *(ଦୌଡ଼ି ଆସିଲା ଗୋଲମରିଚ ଚୂର୍ଣ୍ଣ ଓ ସୈନ୍ଧବ ଲବଣ ନେଇ । ପକେଇବାକୁ ଯାଉଥିଲା । ମନା କଲେ ମହର୍ଷି)*

ଦୁର୍ବାସା: ସେଇଠି ରଖିଦିଅ । ଦେଖ କୁନ୍ତୀ ! ତମେ ସୁନ୍ଦରୀ ଓ ଉର୍ଜସ୍ୱଳା । ମୋ ପାଇଁ ଏ ମିଷ୍ଟାନ୍ନ ପ୍ରସ୍ତୁତ କଲାବେଳେ ଋତୁର ନିୟମ ପାଳନ କରିଥିଲ ?

କୁନ୍ତୀ: କରିଥିଲି ଋଷିବର

ଦୁର୍ବାସା: ଆଜି ଋତୁର କେତେଦିନ ?

କୁନ୍ତୀ: (ଆଙ୍ଗୁଠିରେ ହିସାବ କରି) ଅଷ୍ଟମ ଦିବସ ଗୁରୁଦେବ ।

ଦୁର୍ବାସା: ଏହା କଣ ସତ୍ୟ କୁନ୍ତୀ ?

କୁନ୍ତୀ: ଆଜ୍ଞା !

ଦୁର୍ବାସା: ଅନ୍ୟଥା ହେଲେ ଦଣ୍ଡ ପାଇବ । (ଶଂକିଗଲା ପୃଥା) ଶୁଣ ! ତୁମେ ନିର୍ବସ୍ତ୍ର ହୋଇ ମୋ ଶୟନ କକ୍ଷରେ ଅପେକ୍ଷା କର । ତୁମକୁ ମୁଁ ପରୀକ୍ଷା କରିବି ।

କୁନ୍ତୀ: (ଛେପ ଢୋକି) ପରୀକ୍ଷା କରିବେ ? କି ପରୀକ୍ଷା ଋଷିବର ?

ଦୁର୍ବାସା: କେବଳ ଜଣେ ବ୍ରାହ୍ମଣ କିମ୍ବା ଋଷି ହିସାବରେ ମୁଁ ତୁମକୁ ପରୀକ୍ଷା କରିବାକୁ ଋହେଁ ନାହିଁ । ମୁଁ ଜଣେ ରାଜବୈଦ୍ୟ ମଧ୍ୟ ଏବଂ ତମେ ଉର୍ଜ୍ୱସ୍ୱଳା ରାଜକନ୍ୟା । ତମ ଋତୁ ସଂପର୍କରେ ମୁଁ ତୁମ୍ଭ ପିତାଙ୍କୁ ଏବଂ ଭୋଜରାଣୀଙ୍କୁ ଖବର ଦେବି ।

କୁନ୍ତୀ: ମୁଁ ସବୁ ବୁଝୁଛି ଋଷିବର । କିନ୍ତୁ ମୁଁ ନିର୍ବସ୍ତ୍ର ହୋଇ ଆପଣଙ୍କ ଶୟନ କକ୍ଷକୁ ଗଲେ ଆପଣଙ୍କ ମନ  ଅଶୁଦ୍ଧ ହେବନାହିଁ ତ ? ଯେତେ ହେଲେ ମୁଁ କ୍ଷତ୍ରିୟ କନ୍ୟା ଏବଂ ଆପଣ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ଯୁବ-ତପସ୍ୱୀ । ମତେ ଉଲ୍ଲଗ୍ନ ଅବସ୍ଥାରେ ଦେଖିଲେ ଆପଣଙ୍କର ନିଦ୍ରିତ କାମନା ଯଦି ଜାଗ୍ରତ ହୋଇ ଉଠେ ? ଋଷିଙ୍କର ପବିତ୍ରତା ଯଦି ନଷ୍ଟ ହୋଇଯାଏ ?

ଦୁର୍ବାସା: ଦେଖ ଶୋଭନାଂଗୀ ! କାମ ହେଉଛି ଶରୀରର ଧର୍ମ । ଏ ସୁଖାନଂଦ ଭୋଗ କରିବାର ଅଧିକାର ଋଷିମାନଙ୍କର ମଧ୍ୟ ଅଛି । ବ୍ରାହ୍ମଣ ମାନଙ୍କର ମଧ୍ୟ ଅଛି । ତମେ ମୋର ସେବିକା । ଯଦି ନିଦ୍ରିତ କାମନା ଜାଗ୍ରତ ହୁଏ ତାହାହେଲେ ତୁମେ ଶରୀରକୁ ଉତ୍ସର୍ଗ କରି ମୋର ସେବା କରିବାକୁ ପଡ଼ିବ । ଏକଥା ତ ତୁମେ ଜାଣିଛ କୁନ୍ତୀ !

କୁନ୍ତୀ: ଅବଶ୍ୟ ଋଷିବର । ଆପଣଙ୍କ ସେବା କରିବା ପାଇଁ ଏ ଶରୀରକୁ ମୁଁ ଉତ୍ସର୍ଗ କରିବି ବୋଲି ପ୍ରତିଜ୍ଞା କରିଛି । କିନ୍ତୁ ମୁଁ ଗର୍ଭବତୀ ହେଲେ କିମ୍ବା କାନୀନ ପୁତ୍ରର ଜନନୀ ହେଲେ ସମାଜ ଆଗରେ ମତେ ପରୀକ୍ଷା ଦେବାକୁ ପଡ଼ିବ । ସତୀତ୍ୱ ରକ୍ଷା ନକଲେ ଏ ଦ୍ୱାପର ଯୁଗରେ ମତେ କେହି ପତ୍ନୀ ହିସାବରେ ଗ୍ରହଣ କରିବେ ନାହିଁ । ଏ ଜନ୍ମରେ ମୋର ସ୍ୱୟଂବର ହୋଇପାରିବ ନାହିଁ ।

ଦୁର୍ବାସା: କିନ୍ତୁ ଏହା ମଧ୍ୟ ଜାଣିରଖ - ସେବିକାର ସେବା ଅସଂପୂର୍ଣ୍ଣ ରହିଲେ ମଧ୍ୟ ନର୍କଗାମୀ ହେବାକୁ ହୁଏ । କିନ୍ତୁ ଶରୀର ସଂସର୍ଗରେ କୌଣସି ବାଧା ନାହିଁ । ଆହୁରି ଜାଣିରଖ ଚାରୁହାସିନୀ! ମୁଁ ତୁମକୁ ଆଜି ଏକ ଗୋପନ ବିଦ୍ୟା ଶିକ୍ଷାଦେବି । ଗୋପନ ବିଦ୍ୟା ଶିକ୍ଷା ଦେଲାବେଳେ ଗୁରୁ ଓ ଶିଷ୍ୟ ଉଭୟେ ନିର୍ବସ୍ତ୍ର ହେବା ନିହାତି ଆବଶ୍ୟକ ।

କୁନ୍ତୀ: କେଉଁ ଗୋପନ ବିଦ୍ୟା ଶିକ୍ଷା ଦେବେ ଋଷିବର? ଏ ସବୁ ଗୋପନ ବିଦ୍ୟା ଜାଣିବାପାଇଁ ମନ ଭିତରେ ମୋର ପ୍ରଚୁର ଉତ୍କଣ୍ଠା । ମୁଁ ଜାଣିନି ଋଷିବର, ଉଲ୍ଲଗ୍ନ ହେଲେ ଯାଇ ସାଧନାରେ ସିଦ୍ଧି ଆସେ ।

ଦୁର୍ବାସା: ବୋଧହୁଏ ମୋ କଳ୍ପନା ସହିତ ତୁମ କଳ୍ପନା ମିଶିଯାଉଛି ।

କୁନ୍ତୀ: ମୁଁ ପ୍ରସ୍ତୁତ ହୋଇସାରିଚି ଅପେକ୍ଷା କରିବାକୁ ଆଗାମୀ କୋଟି କୋଟି ଜନ୍ମ ପର୍ଯ୍ୟନ୍ତ । ଆପଣ ଯଦି ରହିଥାନ୍ତେ ଆକାଶ ଓ ପବନ ଦେହରେ... ଶରୀର ଭିତରେ ଆତ୍ମା ରହିଥିବା ପରି - ମୁଁ ପୁଣି ମୋ ଇଚ୍ଛା ମାନଙ୍କ ପାଖକୁ ଆସୁଥାନ୍ତି ଫେରି । ଆସନ୍ତୁ । ମୁଁ ଶୟନ କକ୍ଷକୁ ଯାଉଛି ପାଦ ଗଣି ଗଣି... ଗଣି ଗଣି ଋତୁସ୍ନାନ ଦିନ । ପୂର୍ବରାତିମାନଙ୍କ ଠାରୁ ମୁଁ ଆହୁରି ଅଧିକ ଯତ୍ନଶୀଳ ହେବି । ନହେଲେ ମୋ ଯୁବ ସୂର୍ଯ୍ୟ ହଜିଯିବେ ସର୍ବଶେଷ ଶୂନ୍ୟତା ଭିତରେ! (ହସିଲା ପୃଥା... ଉଚ୍ଛଳ କାମନାର ହସ/ଭଂଗୀ) ।

ଦୁର୍ବାସା: ମୋର ସବୁ ଆଶଂକାକୁ ମିଛ କରି ଅକସ୍ମାତ ତମେ ବର୍ତ୍ତମାନ ପ୍ରକଟିତ ହେଲ । ଏଇ ପଲକରେ ଶେଷ ହେଇଗଲା ମୋର କଳ୍ପନା ଜଳ୍ପନା । ଚାଲ ଶୟନ କକ୍ଷକୁ । (ହଠାତ୍ କୁନ୍ତୀଙ୍କୁ ଶୁଭିଲା କୁନ୍ତଭୋଜଙ୍କ ସ୍ୱର)

କୁନ୍ତଭୋଜଙ୍କର ସ୍ୱର: କିନ୍ତୁ ଗୋଟିଏ କଥା ମନେ ରଖିଥିବୁ କୁନ୍ତୀ! ଦୁର୍ବାସା ପ୍ରଜ୍ୱଳିତ ଅଗ୍ନିସ୍ୱରୂପ । ସେ ନିଜେ ସୂର୍ଯ୍ୟଙ୍କ ପରି ଉତପ୍ତ ଆଉ ଉଜ୍ୱଳ । ତାଙ୍କର ପରିଚର୍ଯ୍ୟା କରିବା ଯାହା, ଅଗ୍ନି ଭିତରେ ପ୍ରବେଶ କରିବା ତାହା (ଆବହ ସଂଗୀତ)

କୁନ୍ତୀ: ଯଥା ଆଜ୍ଞା ଗୁରୁଦେବ ! ମୁଁ ଆପଣଙ୍କ ଶୟନ କକ୍ଷକୁ ଯାଇ ନିର୍ବସ୍ତ୍ର ହେବି (ଚାଲିଗଲା)

*(କୁନ୍ତୀ ଚାଲିଗଲାପରେ ହସିଲେ ଦୁର୍ବାସା । ସେ ହସ ଭିତରେ ଜଣେ ବ୍ରାହ୍ମଣର କ୍ଷମତା ପ୍ରକାଶ ପାଉଥିଲା । ପରିତୃପ୍ତି ମଧ୍ୟ ।)*

ଦୁର୍ବାସା: ମୁଁ ତ୍ରିକାଳଜ୍ଞ ଋଷି ଦୁର୍ବାସା । ସୂର୍ଯ୍ୟଙ୍କର ପ୍ରତିରୂପ । ମୁଁ ତମ ଉପରେ ପ୍ରୀତ ହୋଇଛି ଚାରୁହାସିନୀ । ମୁଁ ତୁମକୁ ଅଥର୍ବ ବେଦର ଏକ ଶକ୍ତିଶାଳୀ ମନ୍ତ୍ର ଦେବି । ଏପରି ଶକ୍ତିଶାଳୀ ମଂତ୍ର ଯେ ତୁମ୍ଭେ ସ୍ୱର୍ଗର ଯେକୌଣସି ଦେବତାଙ୍କ ସହ ଶାରୀରିକ ସଂପର୍କ ସ୍ଥାପନ କରିବାପାଇଁ ସକ୍ଷମ ହେବ । ତୁମ ମଂତ୍ରରେ ଏପରି ସମ୍ମୋହନ ଶକ୍ତି ରହିବ ଯେ ତମେ ଯେକୌଣସି ଦେବତାଙ୍କୁ ସ୍ମରଣ କରିବା ମାତ୍ରେ ସେ ତୁମ୍ଭପାଖକୁ ଆସି ତୁମ୍ଭ ଶରୀର ସହିତ ମିଳିତ ହେବେ । ମୁଁ ଦିବ୍ୟ ଦୃଷ୍ଟିରେ ଦେଖିପାରୁଛି ତୁମେ ଚାରୋଟି ପୁତ୍ରର ଜନନୀ ହେବ । ତନ୍ମଧ୍ୟରୁ ଗୋଟିଏ ପୁତ୍ର କାନୀନ ଏବଂ ଦେବତାମାନଙ୍କ ଔରସରୁ ତୁମର ତିନୋଟି କ୍ଷେତ୍ରଜ ପୁତ୍ର ଜନ୍ମ ନେବେ । ତଥାପି ତୁମର ସତୀତ୍ୱ ଅକ୍ଷୁର୍ଣ୍ଣ ରହିବ । ମୁଁ ତୁମକୁ ଏ ଆଶୀର୍ବାଦ ଦେଉଛି ।

*(ଆଲୋକ ଦୁର୍ବାସାଙ୍କ ମୁହଁରେ କେନ୍ଦ୍ରୀଭୂତ ହୋଇ ଅଂଧକାର ହେଲା)*

## ଦୃଶ୍ୟ-୧୧

*ମଂଚ ଅଂଧକାର ହେଲା ଏବଂ ସେଇ ଅଂଧକାର ଭିତରେ ଅଥର୍ବ ବେଦ ପଞ୍ଚମକାଣ୍ଡର ଶ୍ଲୋକ ନଂ ୧୪୭୩ ଆବୃତ୍ତି କରାଗଲା ।*

ପୁରୁଷକଂଠାରେ ଆବୃତ୍ତି: ଆୟମା ଯାତ୍ୟର୍ଯଶା ପୁରସ୍ତାଦ ବିଷିତସ୍ତୁପଃ ଅସ୍ୟା ଇଚ୍ଛନ୍ନ ଗ୍ରବୈ ପତିମୁତ ଜାୟାମଜାନୟେ ।।

*(ପୁଣି ଛନ୍ଦୋବଦ୍ଧ କବିତା ପାଠକଲା ସ୍ୱରରେ ଶୁଭିଲା)*

ଆବୃତ୍ତି: ପ୍ରଶଂସନୀୟ ସୂର୍ଯ୍ୟଦେବ ପୂର୍ବଦିଶାରେ ଉଦିତ ହେଉଛନ୍ତି । ପୁରୁଷକୁ ପତ୍ନୀ ଏବଂ କନ୍ୟାକୁ ପତିପ୍ରାପ୍ତ ହେବାର ଇଚ୍ଛାରୁ ହିଁ ସେ ଉଦୀୟମାନ ହେଉଛନ୍ତି ।

*(କ୍ରମଶଃ ଉଦିତ ସୂର୍ଯ୍ୟର ଆଲୋକ ମଂଚକୁ ଉଜ୍ଜ୍ୱଳ କଲା । ତାରି ଭିତରେ ପ୍ରବେଶ କଲେ ପାଞ୍ଚଜଣ ସୂତ୍ରଧର ଏବଂ ଉଦିତ ସୂର୍ଯ୍ୟକୁ ଅଥର୍ବ ବେଦର ଷଷ୍ଠକାଣ୍ଡ ୧୫୩୯ ସଂଖ୍ୟକ ମଂତ୍ରରେ ପୁନଶ୍ଚ ଆବାହନ କଲେ । ଏଇଥର ଆବୃତ୍ତିରେ ଜଣେ ମୁଖ୍ୟ ଆବୃତ୍ତି କର୍ତ୍ତାଙ୍କ ସହିତ ଚାରିଜଣ ସୂତ୍ରଧର ସମବେତ ସ୍ୱରରେ ଆବୃତ୍ତି କରିବେ ।)*

ଆବୃତ୍ତି: ପରିହସ୍ତ ବି ଧାରୟ ଯୋନିଂ ଗର୍ଭାୟ ଧାତବେ
ମର୍ଯ୍ୟାଦେ ପୁତ୍ର ମା ଦେହି ତଂ ତ୍ୱମା ଗମୟାଗମେ

ସମବେତ ନାରୀକଣ୍ଠ: ହେ ତେଜ ବଳୟ । ଆପଣ ଗର୍ଭ ଓ ଯୋନିର ସୁରକ୍ଷା କରନ୍ତୁ ଏବଂ ସମୟପୂର୍ଣ୍ଣ ହେବାପରେ ତାକୁ ବାହାରକୁ ଆସିବା ପାଇଁ ପ୍ରେରଣା ଦିଅନ୍ତୁ ।

*(ଏ ସମୟରେ ପ୍ରବେଶ କଲେ ରାଜକନ୍ୟା କୁମାରୀ କୁନ୍ତୀ । ପରିଧେୟରେ ଜଣେ ନୃତ୍ୟାଙ୍ଗନାର ପୋଷାକ ଏବଂ ପାଦରେ ଚଞ୍ଚଳ ନୃତ୍ୟର ପଦଛନ୍ଦ । ସେ ଉଦିତ ସୂର୍ଯ୍ୟଙ୍କୁ ବଂଦନା କରିବା ପାଇଁ ଆଗେଇ ଆସିଲେ ।)*

କୁନ୍ତୀ କଂଠରେ ଆବୃତ୍ତି: ଧାତା ଦାଧାର ପୃଥିବୀଂ ଧାତା ଦ୍ୟାମୁତ ସୂର୍ଯ୍ୟମ୍
ଧାପସ୍ୟା ଅଗ୍ରବେ ପତିଂ ଦଧାତୁ ପ୍ରତିକାମ୍ୟମ୍ ।

ସମବେତ ସ୍ୱର: ସମସ୍ତ ବିଶ୍ୱର ଧାରଣ କର୍ତ୍ତା ପୃଥିବୀ, ଦ୍ୟୁଲୋକ ଏବଂ ସବିତାକୁ ନିଜ ନିଜ ସ୍ଥାନରେ ଧାରଣ କରିଛନ୍ତି । ସେହି ଧାପଦେବ ହିଁ ଏହି ପତି ଅଭିଳାଷିଣୀ କନ୍ୟାକୁ ଇଚ୍ଛିତ ପତି ପ୍ରଦାନ କରିବାର କୃପା କରନ୍ତୁ ।

ପୁରୁଷକଂଠ: ହେ ଆଦିଦେବ ଭାସ୍କର । ଆପଣଙ୍କୁ ପ୍ରଣାମ । ଆପଣ ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ହେ ଦିବାକର ! ଆପଣଙ୍କୁ ନମସ୍କାର । ହେ ପ୍ରଭାକର । ଆପଣଙ୍କୁ ପ୍ରଣାମ । ସପ୍ତ ଅଶ୍ୱଯୁକ୍ତ, ରଥରେ ଆରୂଢ଼, ହାତରେ ଶ୍ୱେତ କମଳ ଧାରଣ କରିଥିବା, ପ୍ରଚଣ୍ଡ ତେଜସ୍ୱୀ କଶ୍ୟପକୁମାର ସୂର୍ଯ୍ୟଙ୍କୁ ମୁଁ ପ୍ରଣାମ କରୁଛି । ଲୋହିତ ବର୍ଣ୍ଣ, ରଥାରୂଢ଼, ସର୍ବଲୋକ ପିତାମହ ମହାପାପହାରୀ ସୂର୍ଯ୍ୟଦେବଙ୍କୁ ମୁଁ ପ୍ରଣାମ କରୁଛି । ଯିଏ ତ୍ରିଗୁଣାତ୍ମକ ବ୍ରହ୍ମା, ବିଷ୍ଣୁ ଏବଂ ଶିବରୂପ ଅଟନ୍ତି – ସେଇ ମହାପାପ ହାରୀ ମହାନ ବୀର ସୂର୍ଯ୍ୟ ଦେବଙ୍କୁ ମୁଁ ନମସ୍କାର କରୁଛି । ଅନଭିଜ୍ଞ ଯୌବନା ମୁଁ, ଇଛାକରୁଛି ଆଜି ତମରି, ସ୍ୱର୍ଶ । ହେ ସୂର୍ଯ୍ୟ ! ସହସ୍ରାଂଶୁ ! ଗୁରୁଙ୍କର ମଂତ୍ର ଯଦି ହେଇଥାଏ ସତ୍ୟ / ତ୍ୟାଗ କରି ଛାୟାର ନେପଥ୍ୟ, ଆସ । ମୋ ପାଖକୁ । ମତେ ବୀର୍ଯ୍ୟ ଦାନ କର । ଦେହ ମୋର ପାଗି ଉଠୁ ବୁଣା ହେବା ପାଇଁ ବୀଜ ଅକ୍ଷିତୃତୀୟାର । ମତେ ରତି ସୁଖ ଦିଅ । ଅନଭିଜ୍ଞ ଯୌବନା ମୁଁ, ଜାଣେ ନାହିଁ ଥଳ ଆଉ କୂଳ / କୁଳ ମୁଁ ଲଂଘିଚି ଆଜି ପିତା ଆଉ ଗୁରୁଜନଙ୍କୁ ଆମଂତ୍ରଣ କରୁଛି ମୁଁ ଅଗ୍ନିଦଣ୍ଡ ସିଏ ଅରଣ ରଙ୍ଗର । ଲଂଘି ଦେଇ ଡେଇଁ ଯାଇପାରେ । ତମର ପୌରଷକୁ କ୍ଷିନ୍‌ଭିନ୍ କରିଦେଇ ପାରେ । ନିଶ୍ୱାସରେ ଅଣଚାସ ମୋର କାମନାର ସମସ୍ତ ବାତ୍ୟାକୁ, ଝଡ଼ ତୋଫାନକୁ ଆଶ୍ରୟ ଦେଇଛ ଆଜି ମୋ ନାକପୁଡ଼ାରେ । ଘୁରିଘୁରି ନଭ ଆଉ ଦିଗନ୍ତ ରେଖାରେ / ଥରେ ଆସ, ଧୂଳିମାଟିର ମୋ ପୃଥିବୀକୁ ଥରେ ଆସ ସାଧାରଣ ମଣିଷଟେ ପରି, ଦେଖିବ ଜରାୟୁରେ ଧାରଣ କରିପାରେ ମୁଁ ସ୍ଥାବର, ଜଂଗମ, କୀଟ ପତଙ୍ଗ ସହ ମାଳମାଳ ବ୍ରାହ୍ମଣ୍ଡ ।

*(ଏଇ ସଂଳାପଟି ସଂପୂର୍ଣ୍ଣ ଅଣବାସ୍ତବାଦୀ ଶୈଳୀରେ ପ୍ରେକ୍ଷିତ ହେବ । ଆବହ ସଂଗୀତ ଓ ତାଳରେ ନୃତ୍ୟଛନ୍ଦ ଥିବ । ସୂର୍ଯ୍ୟଦେବ, ଅରୁଣ ରଂଗର ପୋଷାକ ପିନ୍ଧି କୁନ୍ତୀଙ୍କ ପାଖକୁ ଆସିବେ ଓ ତାଙ୍କ ସାଙ୍ଗରେ ମିଳିତ ହେବେ । ସୂତ୍ରଧର ଗଣ ମଧ ଏହି ମିଳନ ନୃତ୍ୟରେ ଅଂଶ ଗ୍ରହଣ କରିବେ । ମଂଚ ଅଂଧାର ।)*

## ଦୃଶ୍ୟ-୧୨

*(ସ୍ଥାନ, କୁନ୍ତଭୋଜଙ୍କ ରାଜପ୍ରାସାଦର ଅଭ୍ୟନ୍ତର । ସମୟ : ଦିନର ଆଲୋକ ଆସିଲାବେଳକୁ କୁନ୍ତଭୋଜ ବିବ୍ରତ ଅବସ୍ଥାରେ ପଦ ଚାରଣ କରୁଛନ୍ତି ମଂଚ ଉପରେ । ଆବହ ସ୍ୱର ରୂପେ ଗୋଟିଏ ଝିଅର ପ୍ରସବ ବେଦନାର ଯଂତ୍ରଣା ଓ କ୍ଳାନ୍ତି । ଗମ୍ଭୀର ଅର୍କେଷ୍ଟ୍ରା ସହିତ ମିଶ୍ରିତ ହୋଇ ପ୍ରକ୍ଷେପିତ ହେଉଛି । କୁନ୍ତଭୋଜ ସ୍ୱଗତୋକ୍ତି କରୁଛନ୍ତି ।)*

କୁନ୍ତଭୋଜ: କଣ ଆଉ ମୁଁ କରିପାରିଥାନ୍ତି ତୋ ପାଇଁ ? ନିଜ ଆୟତ୍ତରେ କଣ ଥିଲା ମୋର... ? କେବେ ଭାବିବୁନି ମୁଁ ତତେ ଅବହେଳା କରିଛି ବୋଲି ! ତୁ ଆସିଲା ପରେ ଏ ରାଜପ୍ରାସାଦରେ ଜୀବନ ସଂଚାରିତ ହୋଇଛି । ପ୍ରଜାପତି ଧରୁଧରୁ ତୁ ବଡ଼ ହେଇଗଲୁ ଝିଅ, ଏବଂ ମୁଁ ତତେ ଋଷି ଦୁର୍ବାସାଙ୍କ ସେବାରେ ନିୟୋଜିତ କରିଦେଇଥିଲି । ସେ ତତେ ଅଥର୍ବ ବେଦର କୋଉ ମଂତ୍ର ଦେଲେ କେଜାଣି... ମୁଁ ଜାଣିନଥିଲି ତେର ବର୍ଷ ବୟସରେ ତୁ ଅନ୍ତଃସତ୍ତ୍ୱା ହବୁ... ଗୋଟାଏ କାନୀନର ମା ହବୁ ! ତୋ ବାପ ଶୂରସେନ ଜାଣିଲେ ମୋ ଉପରକୁ ଛେପ ପକେଇବ... ଇଆଡ଼େ ତେର ବର୍ଷର ଝିଅଟା ଏଇଠି ଗର୍ଭଯନ୍ତ୍ରଣା ପାଉଛି, ଋଷିଙ୍କର ଦେଖା ନାଇଁ ଏ ପର୍ଯ୍ୟନ୍ତ । ମୁଁ କେମିତି ଭିତରକୁ ଯିବି ? କିଏ ଅଛ ଭିତରେ ? କୁନ୍ତୀ ପାଖରେ କିଏ ଅଛି ?

*(ଦୌଡ଼ି ଆସିଲା ମଧ୍ୟ ବୟସ୍କା ଦାସୀଟିଏ)*

ଦାସୀ: ମହାରାଜା !

କୁନ୍ତଭୋଜ: କେମିତି ଅଛି ଜେମାଙ୍କର ଅବସ୍ଥା ?

ଦାସୀ: ଗର୍ଭଯନ୍ତ୍ରଣା ହଉଚି । ଆଉ ଅଳ୍ପ ସମୟ ଭିତରେ ଛୁଆଟା ଭୂମିଷ୍ଠ ହୋଇଯିବ । ମା'କାଳୀଙ୍କ କୃପାରୁ ଜେମାଙ୍କର କିଛି ଅସୁବିଧା ହବ ନାଇଁ ମହରାଜା !

କୁନ୍ତଭୋଜ: ଶୁଣ, ଏ ସଂତାନ କାନୀନ ।ଯାର ଜନ୍ମ ଖବର ଯେମିତି ପାଟ ଅଗଣା ଡେଇଁ ସିଂହଦ୍ୱାର ପର୍ଯ୍ୟନ୍ତ ନ ଯାଏ । ଜେମା ପାଖରେ ଆଉ କିଏ ଅଛି ?

ଦାସୀ: ଶକୁନ୍ତଳା ଅଛି ।

କୁନ୍ତଭୋଜ: ତାକୁ ବି କହିଦବୁ । ଏ ଖବର ଯେମିତି ପ୍ରଘଟ ନ ହୁଏ । ମୁଁ ଋଷି କୃଷ୍ଣ

ଦ୍ୱୈପାୟନ ବ୍ୟାସଙ୍କ ପାଖକୁ ଘୋଡ଼ାଗାଡ଼ି ପଠେଇଛି । ସିଏ ଆୟୁର୍ବେଦାଚାର୍ଯ୍ୟ । ଜେମାଙ୍କର ସ୍ୱାସ୍ଥ୍ୟ କଥା ସିଏ ବୁଝିବେ । କିଛି ବ୍ୟସ୍ତ ହେବାର ନାଇଁ... (ଦୂରକୁ ଚାହିଁ) ହେଇ ବ୍ୟାସଦେବ ଆସିଗଲେଣି ତମେ ଭିତରକୁ ଯାଅ (ଦାସୀର ପ୍ରସ୍ଥାନ) ।

କୁନ୍ତଭୋଜ: (ବ୍ୟାସଦେବଙ୍କୁ) ପ୍ରଣାମ ଗୁରୁବର ! ଆମେ ସମସ୍ତେ ଉତ୍କଣ୍ଠାର ସହ ଅପେକ୍ଷା କରିଛୁ । ଆପଣଙ୍କ ଆଗମନକୁ ।

ବ୍ୟାସ: ତୁମ ଖବର ପାଇବା ମାତ୍ରେ ମୁଁ ଆଶ୍ରମରେ କହିଦେଇ ରଥରେ ବସିଗଲି । ସଂତାନ ଜନ୍ମ ହେଲା ?

କୁନ୍ତଭୋଜ: ଆପଣ ଦେଖନ୍ତୁ ଋଷିବର । କୁନ୍ତୀ ମୋର ଏକମାତ୍ର କନ୍ୟା । ଦତ୍ତକ ସୂତ୍ରରେ ପାଇଛି । ଆପଣ ତାକଥା ପ୍ରଥମେ ବୁଝନ୍ତୁ । ଏଇ ସେଇପଟ କୋଠରୀକୁ ଯାଆନ୍ତୁ । ଝିଅଟା ବହୁତ କଷ୍ଟ ପାଇଲାଣି ।

*(ବ୍ୟାସଦେବ ଭିତରକୁ ଗଲେ)*

## ଦୃଶ୍ୟ-୧୩

*ଶକୁନି ଏବଂ ଗାନ୍ଧାରୀଙ୍କ ପାଇଁ ଉଦ୍ଦିଷ୍ଟ ହସ୍ତିନାର ନୂତନ ଅତିଥିଶାଳାର ଉପର ମହଲା । ଗାନ୍ଧାରୀ ବହୁ ଅଳଂକାରରେ ନିଜକୁ ସଜେଇ ରଖିଥାନ୍ତି । ସେ ଓଡ଼ିଶୀ ଦେବଦାସୀ ନୃତ୍ୟର ଶୃଙ୍ଗାର ମୁଦ୍ରାରେ ପ୍ରସାଧନ କର୍ମରେ ବ୍ୟସ୍ତ ଥିଲା ପରି ଜଣା ପଡୁଥିଲେ । ଭିତରୁ ବଡ଼ପାଟିରେ ସମ୍ବୋଧନ କଲେ ଶକୁନି*

ଶକୁନି: ଗାନ୍ଧାରୀ ! ଭଗିନୀ ଗାନ୍ଧାରୀ !

ଗାନ୍ଧାରୀ: କଣ ହେଲା ଭାଇ ?

ଶକୁନି: ହସ୍ତିନାର ଏଇ ଅତିଥିଶାଳାରେ ଆମେ ପହଂଚିଲା ପରେ ତୁମେ ବେଶୀ ସମୟ ପ୍ରସାଧନରେ କଟାଉଛ ! କଥା କଣ ?

ଗାଂଧାରୀ: ଉପାୟ ନାହିଁ ଭାଇ ! ପ୍ରତିଦିନ ହସ୍ତିନା ରାଜ୍ୟର ଲୋକେ ତାଙ୍କର ଭବିଷ୍ୟତର ରାଣୀମାଙ୍କୁ ଦେଖିବା ପାଇଁ ଆସୁଛନ୍ତି । ଆଉ ତମେତ ମତେ ମନା କରିଦେଇଥିଲ ଗହଣାଗାଣ୍ଠି ଆଣିବା ପାଇଁ ।

ଶକୁନି: ଏତେ ଦୂର ବାଟକୁ ଆସିଛି ଆମେ । ବାଟରେ ଚୋର ଖଣ୍ଡ ଆମ ଉପରେ ଆକ୍ରମଣ କରିବେ ବୋଲି ମୋ ମନରେ ଆଶଂକା ଆସିଲା । ଏ ଗହଣା ସବୁ ପାଇଲ କୋଉଠୁ ?

ଗାନ୍ଧାରୀ: ପିତାମହ ଭୀଷ୍ମ ପଠେଇଛନ୍ତି ଦାସୀ ହାତରେ । ଦାସୀ କହୁଥିଲା ହସ୍ତିନାର ପୋଷାକ, ହସ୍ତିନାର ରଥ ଓ ସେମାନେ ଯୋଉ ଉପହାର ମତେ ଦେଉଛନ୍ତି ସବୁ ଅଦ୍‌ଭୂତ । ସବୁ ଦାମିକା । ଆମ ଗାଂଧାର ଦେଶରେ ଏ ସବୁ କାହିଁ ?

ଶକୁନି: ସେଇଥିପାଇଁ ଭାବୁଚି ଗାନ୍ଧାର ଦେଶକୁ ଆଉ ଯିବିନାହିଁ । ଏଇଠି ରହିଯିବି ହସ୍ତିନାର ଅତିଥିଶାଳାରେ, ସବୁଦିନ ପାଇଁ ।

ଗାନ୍ଧାରୀ: ବାପା ବୁଢ଼ା ହେଲେଣି । ତମେ ଏଇଠି ରହି କଣ କରିବ ?

ଶକୁନି: ଏଠିକାର ଖାଦ୍ୟ, ଏଇଠି ମତେ ଯୋଉ ରାଜ ପ୍ରାସାଦ ମିଳିଛି ତାର ଗଠନ, ଏଠାରେ ଅନୁଚର ମାନଙ୍କ ବ୍ୟବହାର ସବୁ ସୁନ୍ଦର ।ତାଛଡ଼ା ଏତେ ବାଟ ଆସି ମୁଁ କ୍ଳାନ୍ତ ହୋଇପଡ଼ିଛି ଭଉଣୀ ।

ଗାନ୍ଧାରୀ: ପିତାମହ ଭୀଷ୍ମ ଆସି ସବୁଠୁ ଆଗେ ଆମକୁ ସ୍ୱାଗତ କରିବେ - ମୁଁ କେବେ ସ୍ୱପ୍ନରେ ମଧ୍ୟ ଭାବିପାରିନଥିଲି । କେତେ ବଡ଼ ରାଜ୍ୟ ହସ୍ତିନା, ଅଥଚ

କେତେ ବିନମ୍ର ଏମାନେ !

ଶକୁନି: ରାଜପଥର ଦୁଇଧାରରେ ହସ୍ତିନାର ଲୋକ ଠିଆ ହୋଇ ଆମ ଉପରକୁ ପୁଷ୍ପ ପକାଇ ଅଭିନନ୍ଦନ ଜଣାଉଥିଲେ ।

ଗାନ୍ଧାରୀ: ରାଜପଥ ଲୋକ ଗହଳିରେ 'ଫାଟି ପଡୁଥିଲା ଏବଂ ତାର ଆରପଟରେ ଦିଶୁଥିଲା ଯମୁନାର ନୀଳବେଣୀ ଜଳରାଶି । ତାର ଆରପଟରେ ସୁନ୍ଦର ସବୁଜିମା ଭରା ଅରଣ୍ୟ । ଗାନ୍ଧାରରେ ଏମିତି ସୁନ୍ଦର ପ୍ରକୃତି କାହିଁ କୋଉଠି ମିଳିବ ?

ଶକୁନି: ତମର ଭାଗ୍ୟ ଟାଣ ଗାନ୍ଧାରୀ - ଏଇ ବିରାଟ ବିସ୍ତୀର୍ଣ୍ଣ ସମତଳ ଭୂମିର ସବୁଜ କ୍ଷେତ୍ର ଓ ଅରଣ୍ୟ ସବୁ ତୁମର । ଆଜି ମହାରଥୀ ଭୀଷ୍ମ ଆମ ପାଇଁ ସ୍ୱତଂନ୍ତ୍ର ରଥ ପଠାଇଛନ୍ତି । ସାରଥୀ ହସ୍ତିନା ରାଜ୍ୟର କିଛି ଦର୍ଶନୀୟ ସ୍ଥାନ ଦେଖାଇବ । ଶୀଘ୍ର ବାହାର ।

ଗାନ୍ଧାରୀ: ତମେ ଆଗେ ପ୍ରସ୍ତୁତ ହୁଅ । ମୁଁ ଦାସୀ ଫିରୋଜବାଲାକୁ ଖବର ପଠେଇଛି । ସିଏ ଆସି ମୋର କେଶ ପ୍ରସାଧନ କରିଦେବ । (ଶକୁନିଙ୍କ ପ୍ରସ୍ଥାନ) ଫିରୋଜ ! କୁଆଡ଼େ ଗଲୁ ? ହସ୍ତିନାର ରାଜପ୍ରାସାଦ ଦେଖିବା ଆହୁରି ସରିନାହିଁ ?

*(ଦାସୀ ଫିରୋଜବାଳାର ପ୍ରବେଶ)*

ରୋଜ : (ହସି) କେମିତି ସରିବ ରାଜଜେମା ? ଯୋଉ ଫୁଲଦାନୀ, ଯୋଉ ଗାଲିଚା... ଆଉ ପ୍ରସାଧନ ପାଇଁ ଯେଉଁ ଦର୍ପଣ ଅଛି... ସେଗୁଡ଼ାକୁ ଦେଖିତ ମନ ପୂରି ଯାଉଛି, ହେଲେ ଆଜି ଅନ୍ତଃପୁରକୁ ଯାଇଥିଲି । ବିବାହ ପରେ ଯୋଉ କୋଠରୀରେ ତୁମର ମଧୁଚନ୍ଦ୍ରିକା ହବ । ସେଇଟା ଦେଖିଲି । ଆମ ଗାନ୍ଧାରର ରାଜପ୍ରସାଦ ସେଇ କୋଠରୀ ସହିତ ସମାନ ହବନି ।

ଗାନ୍ଧାରୀ: ବାହାଘର ଆହୁରି ଆଠଦିନ ବାକି ଅଛି । ମୋ କୋଠରୀ ସଜା ହୋଇଗଲାଣି ?

ରୋଜ: ସଜା ହୋଇଗଲାଣି ମାନେ ? ଘର ଭିତରକୁ ପଶିଗଲାମାତ୍ରେ ଗୋଲାପ ଫୁଲର ସୁଗଂଧ ଆସିବ । ତମ ପ୍ରସାଧନ ପାଇଁ ଯୋଉ ଦର୍ପଣ ଅଛି ସେଇଟାକୁ ବୁଲେଇ ଦେଲେ ବୁଲିଯିବ । ଦର୍ପଣର ପଛପଟେ ବିଭିନ୍ନ ଦେଶର ମଦିରା ବୋତଲରେ ଥୁଆ ହୋଇଛି । ଯୋଉ ଗାଲିଚାଟା ତଳେ ପଡ଼ିଛି । ସେଇଟା ଏତେ ମସୃଣ ଯେ କଣ ଆଉ କହିବି... । ।

ଗାନ୍ଧାରୀ: ତାହେଲେ ମୋ ଶ୍ୱଶୁର ଘର ଐଶ୍ୱର୍ଯ୍ୟ ଦେଖି ମୁଁ ତ ଗର୍ବ କରିବା କଥା ।

ରୋଜ: *(କଣ ଗୋଟାଏ ଲୁଚାଇବାକୁ ଚେଷ୍ଟା କଲା । ଓଠ ଋପିଋପି ପାଖକୁ ଆସିବାକୁ ଚେଷ୍ଟା କରି ଅଟକି ଗଲା । ଆବହ ସଂଗୀତ ଗଂଭୀର)*

ଗାନ୍ଧାରୀ: କଣ ହୋଇଛି ସଖୀ ? ତମର ଦେହ ଅସୁସ୍ଥ ?

ରୋଜ: (ପାଖକୁ ଆସି ଅତି କଷ୍ଟରେ କହିଲେ) ବିଶ୍ୱାସ ଘାତକ ଗୁଡ଼ାକ (ଆବହ ସଂଗୀତ) ଝିଅଲୋ' ! ତୋ ସହିତ ବିଶ୍ୱାସ ଘାତକତା ହୋଇଛି । ଶୁଣ୍ ! ତୋ ସାଙ୍ଗରେ ଯେଉଁ ରାଜକୁମାରଙ୍କର ବାହାଘର ହେବ ସେ ଜନ୍ମାନ୍ଧ । (କ୍ରାସ୍ ଶବ୍ଦ)

ଗାନ୍ଧାରୀ: କଣ ବହୁତ ତମେ ସଖୀ ?

ରୋଜ: ହସ୍ତିନାର ଜ୍ୟେଷ୍ଠପୁତ୍ର ଧୃତରାଷ୍ଟ୍ର ଅଂଧ । ତେଣୁ ସେ ରାଜସିଂହାସନରେ ବସିନାହାନ୍ତି । ତାଙ୍କ ସାନଭାଇ ପାଣ୍ଡୁ ହେଉଛନ୍ତି ହସ୍ତିନାର ରାଜା (ଆବହ ସଂଗୀତ)

*(ଗାନ୍ଧାରୀଙ୍କର ଭୀଷଣ ଉଦବେଗ ଓ ମାନସିକ ପ୍ରତିକ୍ରିୟା ସେ ଅଚେତ ହୋଇ ପଡ଼ିଗଲେ । ଫିରୋଜ ବ୍ୟସ୍ତ ହୋଇପଡ଼ିଲେ ଏବଂ ଗାନ୍ଧାରୀଙ୍କୁ ଉଠାଇବାକୁ ଚେଷ୍ଟା କଲେ)*

ରୋଜ: ରାଜଜେମା ! ରାଜଜେମା !

କିଛି ସମୟ ଅଚେତ ହୋଇ ପଡ଼ିରହିଲେ ଗାନ୍ଧାରୀ । ଫିରୋଜ ଜଳ ସିଂଚନ କଲେ ତାଙ୍କ ମୁଖରେ । କ୍ରମେ କ୍ରମେ ଗାନ୍ଧାରୀଙ୍କ ସଂଜ୍ଞା ଫେରି ଆସିଲା ।

ରୋଜ: ଛି ଜେମା ! କ୍ଷତ୍ରିୟ କୁଳରେ ଜନ୍ମ ହେଇ ତମେ ଏଇ ସାମାନ୍ୟ କଥାରେ ଦୁର୍ବଳ ହୋଇ ପଡୁଛ ?

ଗାନ୍ଧାରୀ: ଠିକ୍ କହିଚୁ ସଖୀ ! ସ୍ୱାମୀ ମୋର ଯଦି ଜନ୍ମାନ୍ଧ ତାହେଲେ ମୁଁ ମଧ ମୋ ଆଖିରେ ପଟି ବାନ୍ଧି ବିବାହ ବେଦୀ ଉପରକୁ ଯିବି । ଜୀବନ ସାଥୀ ହେବା ପାଇଁ ଜୀବନ ସାରା ମୁଁ ଅନ୍ଧୁଣୀ ହୋଇ ରହିବି । ସବୁବେଳେ ତାଙ୍କ ପାଖେ ପାଖେ ଥିବି, ଏଇଟା ମୋର ଶପଥ ।

ରୋଜ: ଠିକ୍ ଅଛି ଜେମା । ତମର ଏ ଆଦର୍ଶକୁ ହସ୍ତିନାପୁର ସାଇତି ରଖିବ । ତମେ ଦ୍ୱାପର ଯୁଗର ନାରୀ ହିସାବରେ ଅଗ୍ରପୂଜ୍ୟା ହୋଇରହିବ ।

*(ଫିରୋଜ ବାଳା ରାଜଜେମା ଗାନ୍ଧାରୀଙ୍କୁ କୋଳେଇ ନେଲେ ଓ ମଂଚ ଅଂଧାର ହେଲା ।)*

# ଦୃଶ୍ୟ-୧୪

*ରାଜା କୁନ୍ତଭୋଜଙ୍କ ପ୍ରାସାଦର ଅନ୍ତଃପୁର । କୁନ୍ତୀ ଜେମାଙ୍କର ଗର୍ଭଯନ୍ତଣାର ସ୍ୱର ଶୁଭୁଛି । କୁନ୍ତଭୋଜ ନିଜେ ପ୍ରସୂତି ଘର ବାରଣ୍ଡାରେ ପଦଚାରଣ କରୁଛନ୍ତି । ହଠାତ୍ ଗୋଟିଏ ନବଜାତ ଶିଶୁର କ୍ରଂଦନ ଶୁଣାଗଲା । ଦାସୀ ନବଜାତ ଶିଶୁ ନେଇ ଆସିଛି କୁନ୍ତଭୋଜଙ୍କ ପାଖକୁ ଏବଂ କହିଲା:*

ଦାସୀ: ମହାରାଜ ! ରାଜକୁମାରୀ କୁନ୍ତୀଙ୍କର ପୁତ୍ର ସଂତାନଟିଏ ହୋଇଛି । ନିଅନ୍ତୁ । ଧରିବେ । ଋଷିବର ତାକୁ ସ୍ନାନ କରାଇ ପରିଷ୍କାର କରିଦେଇଛନ୍ତି । ନିଅନ୍ତୁ....

କୁନ୍ତଭୋଜ: ମୁଁ... ନା, କୁମାରୀ ଗର୍ଭର ସଂତାନ । କାନୀନ ସିଏ । ଏ ସଂତାନ ମୋ ରାଜପ୍ରସାଦ ପାଇଁ ବିପଦ । ରାଜଜେମାର ବିବାହ ପାଇଁ ବିପଦ । ମନେ ରଖିବୁ - ଏ ଖବର ଯେମିତି ଉଆସ ବାହାରେ ପ୍ରଘଟ ନ ହୁଏ । ନେଇଯା' - ଏହାର ସଂସ୍କାର ବ୍ୟବସ୍ଥା କର ।

ଦାସୀ: ରାଜବୈଦ୍ୟ ଓ ଧାତ୍ରୀମାନେ ସବୁ ବ୍ୟବସ୍ଥା କରୁଛନ୍ତି । ମୁଁ ଖାଲି ଆପଣଙ୍କୁ ଦେଖେଇବା ପାଇଁ ଆଣିଥିଲି ।

କୁନ୍ତଭୋଜ: ତାକୁ ଭିତରକୁ ନେଇ ଯାଅ । ରାଜଜେମା କୁନ୍ତୀ କେମିତି ଅଛନ୍ତି ?
(ପ୍ରବେଶ କଲେ କୃଷ୍ଣ ଦ୍ୱୈପାୟନ ବ୍ୟାସ)

ବ୍ୟାସ : ମା ଓ ଛୁଆ ଉଭୟେ ଭଲରେ ଅଛନ୍ତି । କିନ୍ତୁ ମୋର ଗୋଟିଏ ପ୍ରଶ୍ନ ରାଜା ! ଏ ବାର/ତେର ବର୍ଷର କୁମାରୀ ଜେମାଟି କେଉଁ କାରଣରୁ ମାତୃତ୍ୱର ଅଭିଶାପ ପାଇଲା ?

କୁନ୍ତଭୋଜ: କେବଳ ଅଭିଶାପ ନୁହେ ଋଷିବର ! ଝିଅ ମୋର ବିଶ୍ୱାସଘାତକତାର ଶିକାର ମଧ୍ୟ ହେଇଛି ।

ବ୍ୟାସ: ବିଶ୍ୱାସ ଘାତକତା ? କିଏ କରିଛି ?

କୁନ୍ତଭୋଜ: ମହର୍ଷି ଦୁର୍ବାସସ୍ (ଆବହ ସଂଗୀତ) ବର୍ଷକ ପାଇଁ ମୋ ଘରକୁ ସିଏ ଅତିଥି ହୋଇ ଆସିଥିଲେ । ମୁଁ ମୋର ସୁଧା ଧବଳ ଅତିଥି ଶାଳାରେ ତାକୁ ରଖାଇଥିଲି । ତାଙ୍କର ସେବା ଯତ୍ନ କରିବା ପାଇଁ କନ୍ୟା କୁନ୍ତୀଙ୍କୁ ମୁଁ ନିଯୁକ୍ତି କରିଥିଲି । ସେ ତାକୁ ଗୋପନ ବିଦ୍ୟା ଶିକ୍ଷା ଦେଉଥିଲେ । ବାଳିକା କୁନ୍ତୀ ତାର ତାରୁଣ୍ୟ ଭିତରକୁ ପ୍ରବେଶ କଲା ମାତ୍ରେ ହିଁ ସେଇ ତେଜଃ ଗୁଣଧାରୀ

ତପସ୍ୱୀଙ୍କର ସଂସର୍ଗରେ ଆସିଛି । ଯାହାଙ୍କର ସମସ୍ତ ପ୍ରକାର ସ୍ୱେଚ୍ଛାଚାରୀ ବ୍ୟବହାରକୁ ସେ ଅମ୍ଳାନ ବଦନରେ ସହି ଯାଇଛି । କେବେ ଅସୁଖୀ ହୋଇନି । ଯଥେଷ୍ଟ କାରଣ ଥିବା ସତ୍ତ୍ୱେ କେବେ ରାଗରୋଷ କରିନି । ତପସ୍ୱୀ କୁନ୍ତୀଙ୍କୁ ନିରାବରଣ କରି, ରାତିରେ, ପାହାନ୍ତା ପହରରେ, ସଂଧ୍ୟାରେ ଯେତେବେଳେ ଖୁସି ସେତେବେଳେ ଆସିଛନ୍ତି ।

ବ୍ୟାସ: ତମେ ଦୁର୍ବାସାଙ୍କୁ କେମିତି ଦେଖିଛ ମୁଁ ଜାଣିନି କୁନ୍ତୀଭୋଜ । କିନ୍ତୁ ମୁଁ ଯେତିକି ଦେଖିଛି - ଦୁର୍ବାସାଙ୍କୁ ଯିଏ ଯାହା କହୁ ପଛକେ, ଅନ୍ତରରେ ସେ କୋପୀ ନୁହନ୍ତି; ବରଂ ମଧୁର ଭାଷୀ, ଦେଖିବାକୁ ତ ଅପୂର୍ବ ରୂପବାନ । ଅସାଧାରଣ ତେଜଧାରୀ । ବହ୍ନି ସ୍ୱରୂପ ସୁପୁରୁଷ । ତାଙ୍କର ତେଜକୁ ସୂର୍ଯ୍ୟଙ୍କର ତେଜ ସହ ତୁଳନା କରାଯାଏ ।

କୁନ୍ତଭୋଜ: ତା'ହେଲେ କୁହନ୍ତୁ ଋଷିବର ! କୁନ୍ତୀ ଆମର କଣ ଭୁଲ କଲା ?

କୁନ୍ତୀଭୋଜ: ତାକୁ ବୁଝେଇ ଦିଆଗଲା - କାମ ହେଉଛି ଶରୀରର ଧର୍ମ । ଯେତେବେଳେ କାମ ବିଷୟରେ କୁନ୍ତୀ ସଚେତନ ହେଲା, ସେତେବେଳେ ସେ ତାକୁ ଗୋପନ ବିଦ୍ୟା ଶିଖେଇଲେ । ଅଥର୍ବ ବେଦର ଗୋଟାଏ ମନ୍ତ୍ର ଦେଲେ ଯେ, ସେଥିରେ ଯେ କୌଣସି ଦେବତାକୁ ଆହ୍ୱାନ କରିବ - ସିଏ ସକାମୀ ହେଉ ବା ନିରାସକ୍ତ ପତଙ୍ଗ ପରି ଆସି କୁନ୍ତୀର କାମାଗ୍ନିରେ ଝାସ ଦେବ । ହେଲେ ପୁରୁଷ ଓ ସ୍ତ୍ରୀଙ୍କର ସଂସର୍ଗ ହେଲେ ପରିଣାମ ଯାହା ହୁଏ, ତାହା ହିଁ ହେଲା । ପୁତ୍ର ସଂତାନଟିଏ ଜନ୍ମ ହେଲା । (ଆବହ ସଂଗୀତ) ଏବେ ମୁଁ କଣ କରିବି ମହର୍ଷି ? ଛୁଆଟା ଜନ୍ମ ହେଲା ପରେ କୁନ୍ତୀକୁ ବାହା କରେଇବି କେମିତି ? କେମିତି ହେବ ତାର ସ୍ୱୟଂବର ? ଭାବୁଛି ନିଶାର୍ଦ୍ଧରେ ନେଇ ଏ ସଂତାନଟିକୁ ନଦୀରେ ଭସେଇ ଦେଇ ଆସିବି ।

ବ୍ୟାସ: କାଷ୍ଠରେ ଗୋଟିଏ ମଂଜୁଷା ନିର୍ମାଣ କର । ତାରି ଭିତରେ କିଛି ଅଳଂକାର ରଖିଦିଅ ମୁଁ ତାକୁ ମଂତ୍ର ସିଦ୍ଧ କରିବି । ତମେ ତାକୁ ଅଶ୍ୱନଦୀରେ ଭସାଇ ଦିଅ । ତାପରେ... ଶୀଘ୍ର କୁନ୍ତୀର ସ୍ୱୟଂବର ଆୟୋଜନ କର ।

କୁନ୍ତଭୋଜ: ଋଷିବର ! ସତ୍ୟ କେବେ ଲୁଚି ରହେ ନାହିଁ । ଯଦି କୌଣସି ଦିନ ପୃଥାର କଳଂକର ରହସ୍ୟ ଖୋଲିଯାଏ... ମୁଁ ତା ସ୍ୱାମୀ ଆଉ ସଂସାର ଆଗରେ କେମିତି ମୁହଁ ଦେଖେଇବି ? ମହର୍ଷି ! ଆପଣ ତ୍ରିକାଳଜ୍ଞ । କୁହନ୍ତୁ କଣ ହେବ ମୋ କନ୍ୟାର ? କଣ ଅଛି ତା ଭାଗ୍ୟରେ ?

*(କୃଷ୍ଣ ଦ୍ୱୈପାୟନ ବ୍ୟାସ ନିମ୍ନ ମଂଚକୁ ଆସିଲେ । ଆବହ ସଂଗୀତ ମଧ୍ୟରେ କିଛି ସମୟ ଧ୍ୟାନମଗ୍ନ ହେଲେ । ତାପରେ କହିଲେ)*

ବ୍ୟାସ: ତୁମେ ଉଦବିଗ୍ନ ହୁଅନାହିଁ କୁନ୍ତଭୋଜ । ବିଧାତାଙ୍କର ଏକ ମହତ୍ କାର୍ଯ୍ୟ କରିବା ପାଇଁ କୁନ୍ତୀର ଜନ୍ମ । ଏହି କାନୀନ ପୁତ୍ର ହେବ ସେଇ ମହତ କାର୍ଯ୍ୟର ମାଧ୍ୟମ । କୁନ୍ତୀ ପାଇଁ ଉପଯୁକ୍ତ ସ୍ୱାମୀଟିଏ ଈଶ୍ୱର ନିର୍ବାଚିତ କରିରଖିଛନ୍ତି । ତମେ ସ୍ୱୟଂବର ସଭାର ଆୟୋଜନ କର । ହସ୍ତିନାପୁରର ରାଜାଧିରାଜ କୁମାର ପାଣ୍ଡୁଙ୍କୁ ନେଇ ମୁଁ ସେ ସ୍ୱୟଂବର ସଭାରେ ପହଂଚିବି । ଦିବ୍ୟ ସୁନ୍ଦର ପୁରୁଷ । ଅପ୍ରତିହତ ବୀର ଯୋଦ୍ଧା । କୁନ୍ତୀ କେବଳ ତା ଗଳାରେ ବରଣମାଳା ଦେବ ।

*(କୁନ୍ତଭୋଜ ଆନନ୍ଦରେ ଅଭିଭୂତ ହୋଇ ପଡ଼ିଲେ । ଉପଯୁକ୍ତ ଆବହ ସଂଗୀତ । ଆଲୋକରେ ପରିବର୍ତ୍ତିତ ମାନସିକତାର ସଂକେତ)*

କୁନ୍ତଭୋଜ: ମହର୍ଷି ! ମୁଁ ସ୍ୱପ୍ନ ଦେଖୁ ନାହିଁ ତ ? ସତରେ କଣ ଆପଣଙ୍କ ବାକ୍ୟ ସତ୍ୟ ହେବ ? ମୋ କନ୍ୟା କଳଙ୍କ ମୁକ୍ତ ହେବ ? କୁନ୍ତୀ ମୋର ହସ୍ତିନାର ରାଣୀ ହେବ ?

ବ୍ୟାସ: ଅନେକ କିଛି ହେବ ରାଜନ୍ । ଏଇ କନ୍ୟାର ବିବାହ ପାଇଁ ମୁଁ ଚେଷ୍ଟା କରିବି । ତାପରେ ରଚନା କରିବି ମହାକାବ୍ୟ ମହାଭାରତ । ସେଥିରେ ମଧ୍ୟ କୁନ୍ତୀ ଓ ଦୁର୍ବାସସ୍‌ଙ୍କ କାହାଣୀ ପ୍ରଚ୍ଛନ୍ନ ରହିବ ।

କୁନ୍ତଭୋଜ: ତାମାନେ ରାଜଜେମା କୁନ୍ତୀଙ୍କର ଏ କାନୀନ ସଂତାନ କଥା ମହାଭାରତରେ ଲିପିବଦ୍ଧ ହେବନାହିଁ ? ତା'ହେଲେ କଣ ଲେଖିବେ ?

ବ୍ୟାସ: ଲେଖିବି ଆଉ ଗୋଟିଏ ଅର୍ଦ୍ଧସତ୍ୟ । ଦୁର୍ବାସା ତାକୁ ଅଥର୍ବ ବେଦର ମଂତ୍ରରେ ଦୀକ୍ଷା ଦେଇଛନ୍ତି । ମନ୍ତ୍ର ଦ୍ୱାରା କୁନ୍ତୀ ତରୁଣ ସୂର୍ଯ୍ୟଙ୍କୁ ଆହ୍ୱାନ କରିଛି ଆଉ ପରୀକ୍ଷା କରିଛି ଦୁର୍ବାସାଙ୍କ ମଂତ୍ରରେ କେତେ ଶକ୍ତି ? ସୂର୍ଯ୍ୟ ଦେବ ଆସି କନ୍ୟା ସହିତ ମିଳିତ ହେଉଛନ୍ତି କି ନାହିଁ !

କୁନ୍ତଭୋଜ: ହେ ଋଷିବର ! ସବୁବେଳେ ଏ ଆଶିର୍ବାଦ ତା ଉପରେ ଥାଉ । ଏ କାନୀନକୁ ଜନ୍ମ ଦେବାର କଳଂକ ଲିଭିଯାଉ ।

*(କୁନ୍ତଭୋଜ ଆଣ୍ଠୁମାଡ଼ି ବସି ବ୍ୟାସଙ୍କୁ ସମ୍ମାନ ଜଣାଇଲେ ଏବଂ ବ୍ୟାସ ଆଶିର୍ବାଦ ମୁଦ୍ରାରେ ମଂଚ ଅନ୍ଧାର ହେଲା ।)*

# ଦୃଶ୍ୟ-୧୫

*(ଅନ୍ତଃପୁରରେ କୁନ୍ତୀ । ଗୋଟିଏ ମହମ ବୋଳା ହେଇଥିବା ସୁନ୍ଦର ମଂଜୁଷା (କାଠପେଢ଼ି) ଆଣି ରଖୁଛନ୍ତି ମଂଚ ଉପରେ । ସମସ୍ତଙ୍କ ସାମ୍ନାରେ ମଂଜୁଷା ଭିତରେ ଶିଶୁପୁତ୍ର- ତାପାଖରେ ତାଙ୍କ ଦେହର ସବୁ ଗହଣା, କିଛି ଫୁଲ କିଛି ଚଂଦନର ଟୀପା ଦେଇ ତାକୁ ବିସର୍ଜନ କରିବାର ପ୍ରସ୍ତୁତି କରୁ କରୁ ନିମ୍ନ ସଂଳାପ କହୁଛନ୍ତି)*

କୁନ୍ତୀ: (ପ୍ରବେଶ କଲେ ମଂଚ ଉପରକୁ ମଂଜୁଷାଟିକୁ ଧରି । ମଂଚ ଉପରେ ତାକୁ ରଖିଲେ ଏବଂ କହିଲେ) ମୁଁ କୁନ୍ତୀ । ଯାଦବ ରାଜା ଶୂରସେନଙ୍କ କନ୍ୟା । ମୋ ଦେହରେ ପିତାମହ ପୁରୁରବା ଓ ଯଯାତିଙ୍କ ରକ୍ତ । ନହୁଷଙ୍କ ରକ୍ତ । ଆମ ଆଭିଜାତ୍ୟ ଆଉ ପରଂପରାରେ କୌଣସି କାଳରେ କୁମାରୀ ମାତାର ସଂତାନ ଅବୈଧ ନଥିଲା । ସେଇଟା ସଂହିତା ଯୁଗର କଥା । ଆଜି, ଦ୍ୱାପର ଯୁଗରେ ସେ ଆଭିଜାତ୍ୟର ରକ୍ତ ପ୍ରଦୂଷିତ । ଆଜି ମୋ ଆଭିଜାତ୍ୟରେ କୁମାରୀ ମାତା କୁନ୍ତୀର ପୁତ୍ର ଅବାଂଛିତ । ମୋର ସବୁ ଆବେଗ, ସବୁ ଉନ୍ମାଦନା, ସୃଷ୍ଟି ଆଉ ନାରୀ ସୁଲଭ ପ୍ରଜନନର ଇଛା ଅବାଂଛିତ... ମୁଁ ଆଉ ମୋର ପୁଅ ଏ ପ୍ରାସାଦରେ ଅବାଂଛିତ... (କଂଠ ଭାଙ୍ଗିପଡ଼ିଲା)
*(ଆବହ ସଂଗୀତରେ କି-ବୋର୍ଡ଼ । କୁନ୍ତୀ ମଂଜୁଷାଟିକୁ ଛାଡ଼ି ଦେଇ ଯାଲିଗଲେ ଭିତରକୁ ପଣତ କାନିରେ ମୁହଁ ଲୁଚେଇ । ବର୍ତ୍ତମାନ ରାଜା, କୁନ୍ତୀଭୋଜ ପ୍ରବେଶ କରି ଘୋଷଣା:) (କୁନ୍ତୀଭୋଜଙ୍କ ପ୍ରବେଶ)*

କୁନ୍ତ: ନା-ନା ମୁଁ ତୋର କୌଣସି ଆବେଦନ ଶୁଣିବା ପାଇଁ ପ୍ରସ୍ତୁତ ନୁହେ କୁନ୍ତୀ । କୁମାରୀ ଅବସ୍ଥାରେ ସଂତାନବତୀ ହେବା ଏକ ବିରାଟ ଅପରାଧ । ତୋର ଏଇ ପୁତ୍ର ସଂତାନ ହେବ ଭୋଜବଂଶର କଳଂକ । ତାକୁ ଏଇ ମଂଜୁଷାରେ ରଖି ଅଶ୍ୱନଦୀରେ ଭସେଇ ଦେଇ ଆ' !

କୁନ୍ତୀର ସ୍ୱର: (କାଂଦି କାଂଦି) ପିତାଶ୍ରୀ !

କୁନ୍ତଭୋଜ: ଯା ପାଇଁ ତୋର ସ୍ୱୟଂବର ଆୟୋଜନ କରାଯାଇପାରିବ ନାହିଁ । ସେଥିପାଇଁ ପ୍ରସବ କରିଥିଲେ ମଧ୍ୟ ଏ ସଂତାନ ଉପରେ ତୋର କୌଣସି ଅଧିକାର ନାହିଁ ।

କୁନ୍ତୀ: (କାଂଦି କାଂଦି) ଅଛି ପିତାଶ୍ରୀ ! ମୁଁ ଯାକୁ ଦଶମାସ ଗର୍ଭରେ ଧରି ଜନ୍ମ ଦେଇଛି । ମୁଁ ତାର ମା !

କୁନ୍ତଭୋଜ: ମୁଁ କିଛି ଶୁଣିବି ନାହିଁ । ଆଜି... ବର୍ତ୍ତମାନ ତାକୁ ନେଇ ଅଶ୍ୱନଦୀରେ ଭସେଇ ଦେଇ ଆ । ସେ ମଂଜୁଷା ଭିତରେ କିଛି ରତ୍ନ ଅଳଂକାର ଭର୍ତ୍ତି କରିଦେଇ ଭସେଇ ଦେ ତାକୁ । ଏଇଟା ମୋର ଶେଷ ନିଷ୍ପତ୍ତି । (ଚାଲିଗଲେ) (ହଠାତ୍ ଛୁଆଟି କାଂନ୍ଦି ଉଠିଲା । ତାକୁ ଉଠାଇ ଆସି ନେଲେ କୁନ୍ତୀ)

କୁନ୍ତୀ: ଧନରେ... ! ଏ କାଠର ମଂଜୁଷା ଗଢ଼ି ଦେଇଚି ତୋର ଭାଗ୍ୟ ! (ତାକୁ ମଂଜୁଷାଭିତରେ ରଖି କୁନ୍ତୀ ନଇପଠାକୁ ଉଠିଲା । ପଠାରୁ ଦିଶୁଛି ଅଶ୍ୱନଦୀ । ସେଇଠି ଠିଆ ହେଲା । ଆଜି ମୁଁ ତତେ ଭସେଇ ଦେବିରେ କଳଂକ... ଯା' ଭାସିଯା' ମୋ କୋଳରୁ ଅନେକ ଦୂରକୁ । (ନାରୀ କଂଠରେ ଏକ କରୁଣ ଆଳାପ ।)

କୁନ୍ତୀ: ଆଜି ମୁଁ ତତେ ଭସେଇ ଦେବିରେ କଳଙ୍କ ! ଯା ! ଭାସି ଯା ମୋ କୋଳରୁ ଅନେକ ଦୂରକୁ... ସଂହିତା ଯୁଗ ଆଉ ନାଇଁରେ ଧନ... ମୋ ନିଜ ଇଚ୍ଛାରେ ପୁରୁଷ ବାଛିବାର ଯୁଗ ଚାଲିଯାଇଛି । ତାପରେ ସତ୍ୟ ଯୁଗ ଗଲା... ତ୍ରେତୟାଯୁଗ ଗଲା... ଏବେ ଦ୍ୱାପର ଯୁଗରେ... ମୁଁ ପୁରୁଷ ସମାଜର କ୍ରୀତଦାସୀ... ମୋ ଆନନ୍ଦର ବୀଜ... ମୋ ସୁଖର ସୁନାଖଣିକୁ ଜାରଜ ବୋଲି କହୁଛି ଦ୍ୱାପର ଯୁଗର ସମାଜ ! ସେଇଥିପାଇଁ ମୋ ବାର୍ଦ୍ଧକ୍ୟର ଲଉଡ଼ିକୁ ମୁଁ ଅବୈଧ ବୋଲି ଫୋପାଡ଼ିଦେବାକୁ ବାଧ୍ୟ । (ଆବହ ସଂଗୀତ ଆଉଟିକିଏ ଆଗେଇଯାଇ ପୁଣି ଠିଆ ହୋଇ ପଡ଼ିଲେ କୁନ୍ତୀ) ମଂଜୁଷାକୁ କୂଳରେ ଥୋଇଲେ) ଭାସିଯା ଏଇ ଅଶ୍ୱନଦୀରେ... ଅଶ୍ୱନଦୀ ଯାଇ ମିଶିଯିବ ଚର୍ମନ୍ୱତୀ ନୀରେ । ତାପରେ ଯମୁନା ନଦୀରେ । ତା'ପରେ ଯାଇ ମିଶିବୁ ଗଂଗାନଦୀ ଧାରେ । ତାପୂର୍ବରୁ ଯଦି କୋଉ ଚିଲକି ଛଞ୍ଚାଣ ଉଠେଇ ନବତ ଉଠେଇ ନବ... ନହେଲେ ଅନନ୍ତ ସମୁଦ୍ର ତତେ ତୋଳିନେବ ତାର ମାତୃତ୍ୱର ଅତଳ ଛାତିକୁ । କରୁଣାର ଢେଉ ଭିତରକୁ । (ଆବହ ସଂଗୀତରେ "କି-ବୋର୍ଡ଼") ତାପରେ ଜହ୍ନ ନଥିବା ଆକାଶରେ ସବାଶେଷ ଶୂନ୍ୟତାର ସବୁଠାରୁ ସାନ... ଦିକିଦିକି ତାରାଟିଏ ପରି ତୁ ମୋର ଆବେଗର ଆକାଶରୁ ଦୂରେଇ ଯିବୁ... ମା ହେବାର ସେ ଇଚ୍ଛା ମୋର ଦବିଯିବ ! ଅମୃତ ସୃଷ୍ଟିକୁ ସମ୍ମାନ ଦେବାର ସମୟ ଚାଲିଗଲାଣି । ଏ ପୃଥିବୀରୁ ଦ୍ୱାପରର ଏ ଅର୍ଖିତ ପୁଅଟା ମୋର ଭାସିଯିବ ଦୂରବର୍ତ୍ତୀ କଳିର ସ୍ରୋତକୁ ।

*(ଆବହ ସଂଗୀତ । ଏଥର ମଂଜୁଷାଟିକୁ ପୁଣି ଉଠେଇଲେ । ତାକୁ ବାହାରୁ ଚୁମା ଦେଲେ)*

କୁନ୍ତୀ: ହେ ଯକ୍ଷ ରକ୍ଷ, ହେ ଗଂଧର୍ବ କିନ୍ନର !
କୁଳାୟରେ ସ୍ଥିର ରହୁ ବିହଙ୍ଗମ ମୋର
ନଦୀରେ ହିଁ ସ୍ତବଧ ହୁଅ ହେ ଅଶ୍ୱ ତରଙ୍ଗ
ତମକୁ ଫେରାଇ ଦେଉଛି ତ୍ରିକାଳକୁ ମୋର
ମାତୃତ୍ୱର ବିଗଳିତ ଶୃଙ୍ଗ...
*(ଆବହ ସଂଗୀତ, କୁନ୍ତୀ ଭାଙ୍ଗି ପଡ଼ିଲେ)*
ଆଜି ମୁଁ କାନ୍ଦୁଛି ଜୀବନରେ ପ୍ରଥମ ଥର ।
କେଜାଣି କାହିଁକି ... (ବଂଶୀରେ ଆଳାପ)
ନୁହେ ଭାଗ୍ୟପାଇଁ
ନୁହେ ମଧ କାନ୍ତ ଦୀପ୍ତ ଦୁର୍ବାସାଙ୍କ ପାଇଁ
ମୁଁ କାନ୍ଦୁଛି ପୃଥିବୀର ଯେତେ ସବୁ କାନୀନଙ୍କ ପାଇଁ
ଅଭିଶପ୍ତ ମାତୃଗର୍ଭ ପାଇଁ ।
(ମଂଜୁଷାଟିକୁ ଉଠାଇଲେ ଏବଂ ଇତସ୍ତତଃ ହେଲେ । କଣ କରିବେ ଜାଣି ପାରୁନାହାନ୍ତି)
ହେ ଦୂର ଆକାଶର ଜହ୍ନମାମୁଁ... ଓହ୍ଲେଇ ଆସ ମୋ ପୁଅର କୋଳକୁ । ଏ ପୃଥିବୀର ସବୁ ସ୍ନେହ, ସବୁ ଶୀତଳତା ନେଇ ଓହ୍ଲେଇ ଆସ, ତମକୁ ଡାକିବାକୁ ମୋ କଂଠରେ ଗୀତ ନାଇଁ ଜହ୍ନ ! କୋହ ଅଛି । ମୋ ଆଖିରେ ଲୁହ ଅଛି ଜହ୍ନ... ମାତୃତ୍ୱର ସ୍ୱପ୍ନ ଆଉ ନାହିଁ । ଭୁଲିଯିବି ଅତୀତକୁ, ତାହା ପାଇଁ କ୍ଷୋଭ ମଧନାହିଁ । ମୁଁ ଜାଣୁଛି ମୋ ଅର୍ଖିତ ପୁଅର... ନାହାନ୍ତି ଈଶ୍ୱର..., ଜୀବନ ମୋର ହୋଇଯାଉଛି ସତମିଶା ମିଛ ଖେଳଘର...
*(ଆବହ ସଂଗୀତରେ କୋରାଲ ହମିଂ... ମଂଜୁଷାଟିକୁ ଟେକି ଧରିଲେ । ଏତିକିବେଳେ ଶିଶୁଟି କାନ୍ଦି ଉଠିଲା । ଗୋଟିଏ ଶିଶୁର ସ୍ୱର "ମା".... ! (କାନ୍ଦିଉଠିଲେ କୁନ୍ତୀ) ଜାଣେନାରେ ଧନ.. ଜାଣେନା ତୋ ମାଟା କିପରି ହେଲା ଏତେ ନିର୍ମମ, ନିଷ୍ଠୁର(ଛାତିରେ ଜାକିଧରି) ବାରମ୍ବାର ଚୁମା ଦେବ) ଶୋଇପଡ଼... ଶୋଇପଡ଼ ନିଘୋଡ଼ ନିଦରେ) ଶୋଇପଡ଼.. ତାପରେ ମୁଁ ଠକି ଦେବି ତତେ... (କାନ୍ଦି କାନ୍ଦି ଗାଇଲେ) ଧୋରେ ବାଇଆ ଧୋ... ଯୋଉ କିଆରୀରେ ଗହଳ ମାଣ୍ଡିଆ ସେଇ କିଆରୀରେ ଶୋ... (ଗାଉ ଗାଉ ଭସେଇ ଦେଲେ । ଗୀତଟା ହୋଇଗଲା ଗୋଟେ ଉଚ୍ଚସ୍ୱରର କ୍ରନ୍ଦନ ।*
ମଂଜୁଷାଟି ସିଲହୁଟ୍‌ରେ ଭାସିଗଲା)

# ଦୃଶ୍ୟ-୧୬

*ଶାହାନାଇ ଓ ସ୍ୱୟଂବରର ସଭାର ଆୟୋଜନ । ଶୁଭିଲା ରଥ ଆସିବାର ଘୋଡ଼ାଟାପୁ ଶବ୍ଦ । ରଥରୁ ଓହ୍ଲାଇଲେ କୃଷ୍ଣ ଦ୍ୱୈପାୟନ ବ୍ୟାସ ଓ ତାଙ୍କ ସାଙ୍ଗରେ ହସ୍ତିନାର ରାଜା ପାଣ୍ଡୁ । ରାଜା କୁନ୍ତଭୋଜ ସେମାନଙ୍କୁ ସ୍ୱାଗତ କଲେ । କୃଷ୍ଣ ଦ୍ୱୈପାୟନଙ୍କୁ ପ୍ରଣାମ କଲେ ।*

କୃଷ୍ଣଦ୍ୱୈପାୟନ ବ୍ୟାସ : ଇଏ ହେଲେ ହସ୍ତିନାର ସମ୍ରାଟ ପାଣ୍ଡୁ । ତୁମ କନ୍ୟାର ସ୍ୱୟଂବରରେ ଯୋଗ ଦେବାକୁ ଆସିଛନ୍ତି ।

କୁନ୍ତୀଭୋଜ: ଆସନ୍ତୁ ମାନ୍ୟବର ! ଆପଣଙ୍କୁ ସ୍ୱାଗତ । (ଦ୍ୱୈପାୟନ ଚାଲିଗଲେ ଓ୍ୱିଙ୍ଗସ୍ କଡ଼କୁ । ପାଣ୍ଡୁ ମଂଚ ଉପରେ ଠିଆ ହେଲେ । ପୁଣିଥରେ ରଥଟି ଚାଲିଲା ଏବଂ ସେଇ ଭିତରୁ ଓହ୍ଲାଇଲେ ଆଉ ଜଣେ ରାଜକୁମାର)

ରାଜକୁମାର: ମୁଁ ଶୁଭ ଦେଶର ରାଜକୁମାର ଶ୍ୱେତକେତୁ । ସ୍ୱୟଂବରରେ ଯୋଗଦାନ କରିବା ପାଇଁ ଆସିଛି ।

କୁନ୍ତଭୋଜ: ଆପଣଙ୍କୁ ସ୍ୱାଗତ ।
*(ପୁଣିଥରେ ରଥଟି ଚାଲିଲା ଓହ୍ଲାଇଲେ ଯଦୁବଂଶର ରାଜା ଶୀର୍ଷକାୟ । ସେ ଓହ୍ଲାଇଲେ)*

ଶୀର୍ଷକାୟ: ମୁଁ ଦର୍ଶନ ରାଜକୁମାର ଶୀର୍ଷକାୟ । ଆପଣଙ୍କ ସ୍ୱୟଂବରରେ ଯୋଗଦେବି ।

କୁନ୍ତଭୋଜ: ଆପଣଙ୍କୁ ସ୍ୱାଗତ । (ସେ ଯାଇ ଦଣ୍ଡାୟମାନ ହେଲେ)
ବର୍ତ୍ତମାନ ରଥଟି ଓ୍ୱିଙ୍ଗସ୍ ପଛପଟକୁ ଚାଲିଗଲା ।) ଦୁଇଜଣ ରାଜକୁମାର ଆସି ପହଂଚିଲେ)

ଦେବବ୍ରତ: ମୁଁ ପୁଣ୍ଡ୍ର ଦେଶ ରାଜକୁମାର ଦେବବ୍ରତ ।

ଚନ୍ଦ୍ରକାନ୍ତ: ମୁଁ ମିଥିଳାପତି ଚନ୍ଦ୍ରକାନ୍ତ ।

କୁନ୍ତଭୋଜ: ଆପଣ ମାନଙ୍କୁ ସ୍ୱାଗତ । ମୁଁ ବର୍ତ୍ତମାନ ସ୍ୱୟଂବର କାର୍ଯ୍ୟ ଆରମ୍ଭ କରିବା ପାଇଁ ପଣ୍ଡିତ ବାହ୍ମଣମାନଙ୍କୁ ଅନୁରୋଧ । କନ୍ୟା କୁନ୍ତୀ ବରଣମାଳା ନେଇ ସ୍ୱୟଂବର ସଭାରେ ପ୍ରବେଶ କରନ୍ତୁ । ଶାହାନାଇ ବାଜିଲା । "ବିଭୂଷଣ କରି କନ୍ୟାକୁ ଆମେ" ଗୀତଟି ପ୍ରଚ୍ଛଦପଟରୁ ବୋଲାଯିବ ଏବଂ ଦାସୀଙ୍କ ଗହଣରେ ଅପୂର୍ବ ସୁନ୍ଦରୀ କୁନ୍ତୀ ବରଣମାଳା ନେଇ ପ୍ରବେଶ କଲେ ଓ ପାଣ୍ଡୁଙ୍କ ଗଳାରେ ବରଣ ମାଳା ପକେଇ ଦେଲେ ।

ସେମାନେ ସାମ୍ନାକୁ ଆସିଲେ ଓ ବେଦମଂନ୍ତ୍ର ଉଚ୍ଚାରିତ ହୋଇ ବିବାହ କାର୍ଯ୍ୟ ସଂପନ୍ନ ହେଲା । ଏହି ସମୟରେ ପ୍ରଚ୍ଛଦପଟରୁ ନିମ୍ନମଂନ୍ତଟି ସ୍ୱୟମ୍ବର ସମୟରେ ଆବୃତ୍ତି କରାଯିବ । "ଓଁ ହ୍ରୀଂ ଯୋଗୀନୀ ଯୋଗୀନୀ ଯୋଗେଶ୍ୱରୀ ଯୋଗ ଭୟଂକରୀ ସକଲ ସ୍ଥାବର ଜଙ୍ଗମସ୍ୟ ମୁଖଂ ହୃଦୟଂ ମମ ବଶଂ ଆକର୍ଷ ଆକର୍ଷୟ ସ୍ୱାହା"

## ଦୃଶ୍ୟ-୧୭

*ପାଣ୍ଡୁଙ୍କର ବିବାହ ଖବର ପାଇ କ୍ରୋଧରେ ଥରି ଉଠିଲେ ଭୀଷ୍ମ । କ୍ଷିପ୍ର ଗତିରେ ମଂଚ ଉପରେ ପ୍ରବେଶ କରି କହିଲେ:*

ଭୀଷ୍ମ: ନିର୍ବୋଧ । ପାଣ୍ଡୁ ଗୋଟିଏ ନିର୍ବୋଧ । ମୁଁ ତାକୁ ରାଜ୍ୟ ଜୟ କରି କିଛି ଅଳଂକାର, ସୁନାରୂପା ଆଣିବା ପାଇଁ ପଠେଇଥିଲି । ଭାବିଥିଲି କନ୍ୟାରତ୍ନଟିଏ ମଧ୍ୟ ରାଜ୍ୟଜୟ କରି ଆଣିଥାନ୍ତା । କିନ୍ତୁ ଏ କଣ କଲା ପାଣ୍ଡୁ ? ଗୋଟିଏ ଛୋଟିଆ ଜମିଦାର କୁନ୍ତଭୋଜ ଆୟୋଜନ କରିଥିବା ସ୍ୱୟଂବର ସଭାରେ ଯୋଗଦେଲା ? କିଏ ଏଥିପାଇଁ ଦାୟୀ ? କୃଷ୍ଣ ଦ୍ୱୈପାୟନର ଏ କୁବୁଦ୍ଧି କିନ୍ତୁ କୋଉ ସ୍ୱାର୍ଥରେ ଦ୍ୱୈପାୟନ ଏଇ ବିବାହରେ ଇଂଧନ ଯୋଗାଇଥିଲେ ? ଦ୍ୱୈପାୟନର ଏଇ ସିଦ୍ଧାନ୍ତ ପାଇଁ ହସ୍ତିନାପୁରକୁ ଅନେକ କିଛି ହରାଇବାକୁ ପଡ଼ିଲା । ପ୍ରଥମ କଥା ଭୋଜବଂଶୀୟମାନେ କ୍ଷତ୍ରିୟ ନୁହନ୍ତି । ହୁଏତ ଭବିଷ୍ୟତରେ ଏ ବିବାହ ଆମକୁ ମହଙ୍ଗା ପଡ଼ିପାରେ ।

*(ବିଦୂର ସୁବର୍ଣ୍ଣ ଗିଲାସରେ ପାନୀୟ ଜଳ ନେଇ ଆସିଲେ)*

ବିଦୂର: ଆପଣ ଅତ୍ୟଧିକ ଉତ୍ତେଜିତ ଅଛନ୍ତି ପିତୃବ୍ୟ । ଜଳପାନ କରନ୍ତୁ ।

ଭୀଷ୍ମ: କୁନ୍ତୀର ସ୍ୱୟଂବରରେ ଯୋଗଦାନ କରି ଦ୍ୱୈପାୟନ ହସ୍ତିନାର ଗାରିମା ଟିକକ ନଷ୍ଟ କରିଦେଲା ବିଦୂର ! ଜାଣି ପାରିଲାନାହିଁ ହସ୍ତିନାପୁରକୁ ଏପରି ଏକ ସ୍ୱୟଂବର ସଭା ସାଜେ ନାହିଁ । ତମେ ତ ସବୁ ଜାଣ ବିଦୂର ! ଏ ବିବାହଟା କଣ ଆମ କୂଳକୁ ସାଜିଲା ?

ବିଦୂର: କିନ୍ତୁ ପିତୃବ୍ୟ, ତାଙ୍କ ପରି ସୁନ୍ଦରୀ ଏ ଜଗତରେ ବିରଳ ।

ଭୀଷ୍ମ: ଅବଶ୍ୟ ସେ ସଂପର୍କରେ ମୋର ଦ୍ୱିମତ ନାହିଁ । କିନ୍ତୁ କୁନ୍ତଭୋଜ ଯାଦବବଂଶର । ସେମାନେ ଆର୍ଯ୍ୟ କି ଅନାର୍ଯ୍ୟ ସେ ବିଷୟରେ ମୋର ସନ୍ଦେହ ଅଛି ବିଦୂର !

ବିଦୂର: ଅର୍ଥାତ୍ ?

ଭୀଷ୍ମ: କୃଷ୍ଣ ଦ୍ୱୈପାୟନ ନିଜେ ଅନାର୍ଯ୍ୟ ରମଣୀର ସଂତାନ । ସେ ଚାହୁଁଛି ହସ୍ତିନାପୁରର ଶୁକ୍ଳବର୍ଣ୍ଣର ଆର୍ଯ୍ୟ ଶରୀର ଅଶୁଦ୍ଧ ହେଉ । ଏ ରାଜପ୍ରାସାଦରେ ଅନାର୍ଯ୍ୟ ଶୂଦ୍ର ରମଣୀ ପ୍ରବେଶ କରନ୍ତୁ । ମୁଁ ଧୃତରାଷ୍ଟ୍ରର ବିବାହ ଦେଇଛି

ଗାନ୍ଧାର ରାଜକନ୍ୟାଙ୍କ ସାଙ୍ଗରେ ଗାନ୍ଧାରୀ ଶୁଦ୍ଧ ଆର୍ଯ୍ୟ କନ୍ୟା । ଶୁଦ୍ଧ ଆର୍ଯ୍ୟଦେଶ ଗାନ୍ଧାରରୁ ଆସିଛି । କିନ୍ତୁ ପାଣ୍ଡୁ... ସେ କଣ କଲା ?

ବିଦୂର: କୁନ୍ତୀ ମଧ ଗୌରବର୍ଣ୍ଣା । ଆପଣ ଜାଣିନାହାନ୍ତି ପିତୃବ୍ୟ, ଗାନ୍ଧାରୀ ଭାଉଜଙ୍କ ଅପେକ୍ଷା କୁନ୍ତୀ ଭାଉଜ ବହୁଗୁଣରେ ଅଧିକ ସୁନ୍ଦରୀ । ଆପଣ ଧୈର୍ଯ୍ୟଧରି ବସନ୍ତୁ । ଭ୍ରାତା ପାଣ୍ଡୁ ଭାଉଜ କୁନ୍ତୀଙ୍କୁ ନେଇ ଫେରୁଛନ୍ତି ।

ଭୀଷ୍ମ: କୁନ୍ତଭୋଜ କଣ ଜାଣେ ? ଝିଅକୁ ହସ୍ତିନାପୁରର ରାଣୀ କରିବାକୁ ହେଲେ ଯାନିଯୌତୁକ ଅନେକ କିଛି ଦେବାକୁ ପଡ଼େ । ସେ ବିଷୟରେ କିଛି ଖବର ରଖିଛ ?

ବିଦୂର: କୁରୁବଂଶର ଆଭିଜାତ୍ୟ, ମର୍ଯ୍ୟାଦା ଓ ଗୌରବ କଥା ବିବେଚନାକୁ ଆଣି ସେ ପ୍ରଚୁର ଧନରତ୍ନ, ଅଳଂକାର ଦେଇଛନ୍ତି ପିତୃବ୍ୟ । ଦେଶ ବିଦେଶର ନାମୀ-ଦାମୀ ବିଚିତ୍ର ଉପହାର ସାମଗ୍ରୀ, ଦୁଗ୍ଧବତୀ ଗାଭି, ହସ୍ତୀ, ରଥ ପ୍ରଭୃତି ନେଇ କୁନ୍ତୀ ଭାଉଜ ଆସୁଛନ୍ତି । ଆପଣ ଅନ୍ତଃପୁରକୁ ଯାଇ ସେମାନଙ୍କୁ ବଂଦାପନା କରି ଆଣିବା ପାଇଁ ମାତା ମାନଙ୍କୁ ଖବର ଦିଅନ୍ତୁ ! ସମ୍ରାଟ ଧୃତରାଷ୍ଟ୍ରଙ୍କୁ ଖବର ଦିଅନ୍ତୁ ।

*(ବାହାରେ ପାଣ୍ଡୁ ଓ କୁନ୍ତୀଙ୍କ ଆଗମନର ବାଜା ବାଜିଲା । ଶଂଖ ଓ ହୁଳହୁଳି ଶବ୍ଦ ଶୁଭିଲା । ଭୀଷ୍ମ ସେଇଠି ଠିଆ ହୋଇଥାନ୍ତି । ବିଦୂର ମଧ ଅମ୍ବା, ଗାନ୍ଧାରୀ, ଅମ୍ବାଳିକା ଓ ଦାସୀମାନେ ୱିଙ୍ଗସ୍ ପାଖ ପର୍ଯ୍ୟନ୍ତ ଆସି ଦୀପ, ଫୁଲ ଇତ୍ୟାଦିରେ ବଂଦାଣ କଲେ ଓ ପ୍ରବେଶ କଲେ ପାଣ୍ଡୁ ଓ ରାଣୀ କୁନ୍ତୀ । ପାଣ୍ଡୁ ପିତୃବ୍ୟ ଭୀଷ୍ମଙ୍କୁ ପ୍ରଣାମ କଲେ ଏବଂ କୁନ୍ତୀଙ୍କୁ କହିଲେ)*

ପାଣ୍ଡୁ: ପ୍ରଣାମ କର କୁନ୍ତୀ ! ଇଏ ହେଉଛନ୍ତି ପିତୃବ୍ୟ ଭୀଷ୍ମ !

*(କୁନ୍ତୀ ପ୍ରଣାମ କରି ପାଦ ଛୁଇଁଲେ)*

ଭୀଷ୍ମ: କୁରୁବଂଶର ଅନ୍ତଃପୁରକୁ ସ୍ୱାଗତ କରୁଛି ତୁମକୁ ।

କୁନ୍ତୀ: ମୋର ପରମ ସୌଭାଗ୍ୟ ପିତାଶ୍ରୀ... ହସ୍ତିନାର ବଧୂ ହୋଇ ମୋ ଜୀବନ ଧନ୍ୟ ହେଲା ।

ପାଣ୍ଡୁ: ଇଏ ହେଉଛନ୍ତି ଗାନ୍ଧାରୀ । ମୋର ଭାଉଜ ! ତମର ବଡ଼ଭଉଣୀ । (ପ୍ରଣାମ କଲେ)

ଗାନ୍ଧାରୀ: ମୁଁ ବିବାହ କରିବା ପାଇଁ ଆସିଲା ବେଳକୁ ତୁମେ ଯୁଦ୍ଧ ଅଭିଯାନରେ ଯାଇଥିଲ ପାଣ୍ଡୁ । ଯା ହେଉ ଭଲ ହେଲା । ଆସ ଭଉଣୀ । ମୁଁ ତମକୁ

ଦେଖେ ପ୍ରଥମେ ! *(ଅଂଧପୁଟୁଳି ଖୋଲି କୁନ୍ତୀଙ୍କୁ ଦେଖିଲେ । ଗାନ୍ଧାରୀଙ୍କୁ ପ୍ରଣାମ କଲେ କୁନ୍ତୀ)*

କୁନ୍ତୀ: ଗାନ୍ଧାରୀ ଅପା ! ଆପଣଙ୍କୁ ମୋ ବଡ଼ ଭଉଣୀ ରୂପରେ ପାଇବା ମୋ ପାଇଁ ପରମ ସୌଭାଗ୍ୟ । ମୁଣ୍ଡିଆ ମାରୁଛି ।

ଗାନ୍ଧାରୀ: ମୁଣ୍ଡିଆ କଣ ମାରୁଛୁ ? ଆ ତତେ ମୁଁ କୋଳେଇ ନଉଛି । ଚାଲ ଭିତରକୁ ଚାଲ । ମୋ ସ୍ୱାମୀଙ୍କ ସହିତ ପରିଚୟ କରେଇଦେବି । ଦେଖେଇଦେବି କୁଳ ଦେବତା ଥିବା ଠାକୁରଘର । *(ଗାନ୍ଧାରୀ କୁନ୍ତୀଙ୍କୁ ନେଇ ଚାଲିଯାଉଥିଲେ । ପଛରୁ ଡ଼ାକିଲେ ବିଦୁର:) (ଭୀଷ୍ମ ଓ ପାଣ୍ଡୁ ଅନ୍ତଃପୁରକୁ ଗଲେ ।)*

ବିଦୂର: ଶୁଣ ଭାଉଜ । ମୁଁ ତମର ମୁହୂର୍ତ୍ତଟିଏ ନଷ୍ଟ କରିବି ।
*(ଅଟକି ଗଲେ ଗାନ୍ଧାରୀ କୁନ୍ତୀଙ୍କ ସହିତ । କୁନ୍ତୀ ଫେରିଚାହିଁଲେ ବିଦୂରଙ୍କୁ)*

ଗାନ୍ଧାରୀ: ତୁ ତାଙ୍କ ନୂଆ ଭାଉଜ ! ସାମ୍ନାରେ ଯେଉଁ ଅନାବଶ୍ୟକ ଚରିତ୍ରଟିକୁ ଦେଖୁଛନ୍ତି ତା ନାଁ ବିଦୂର । ବିଦୂର ଏ ରାଜପ୍ରାସାଦରେ ଅଛି କିନ୍ତୁ ଶୂଦ୍ରାଣିର ପୁତ୍ର ହୋଇଥିବା ଯୋଗୁଁ ଏ ପ୍ରାସାଦର କୌଣସି ପର୍ବରେ ସେ ସମାନ ଅଧିକାର ପାଇବା ପାଇଁ ଅଯୋଗ୍ୟ । ତଥାପି ମୋ ସ୍ୱାମୀ ଧୃତରାଷ୍ଟ୍ର ହସ୍ତିନାର ସମ୍ରାଟ ଭାବରେ ତାଙ୍କଠାରୁ ମଂନ୍ତ୍ରଣା ଗ୍ରହଣ କରନ୍ତି । ସେଥିପାଇଁ ଏ ହତଭାଗ୍ୟ ବିଦୂରକୁ ମଂନ୍ତ୍ରୀ ବୋଲି କୁହାଯାଏ ।

କୁନ୍ତୀ: ମୁଁ ଆପଣଙ୍କ ଧର୍ମଜ୍ଞାନ, ସତ୍ୟତା ଏବଂ ପାଣ୍ଡିତ୍ୟ ବିଷୟରେ ଆଗରୁ ଶୁଣିଛି ଦେବର ମହାଶୟ ।

ବିଦୂର: ଦୟାକରି ଏ ଶୂଦ୍ରପୁତ୍ରକୁ 'ତମେ' ବୋଲି ସମ୍ବୋଧନ କରନ୍ତୁ । ନଚେତ୍ ଖାଲି ବିଦୂର ବୋଲି ଡାକିଲେ ମଧ୍ୟ ମୁଁ ଶୁଣିବି ।

କୁନ୍ତୀ: ତମ ଅଭିମାନ ମୁଁ ବୁଝିପାରୁଛି ବିଦୂର ! ସେଇଥିପାଇଁ...

ବିଦୂର: ସେଇଥିପାଇଁ ତମ ସହିତ ମୋର ପରିଚୟ କରେଇ ଦିଆଗଲା ନାହିଁ ।

କୁନ୍ତୀ: କିନ୍ତୁ ଦେଖ ବିଦୂର । ତମଠାରୁ ବୟସରେ ମୁଁ ବହୁତ ସାନ । ଶିକ୍ଷା ଆଉ ସଂସ୍କାରରେ ମଧ୍ୟ ତମ ତୁଳନାରେ ଯଥେଷ୍ଟ ଅଯୋଗ୍ୟ । ସମୟ ଅସମୟରେ ଭୁଲ୍ ହେଲେ ମତେ ଉପଦେଶ ଦେବାକୁ ଭୁଲିବ ନାହିଁ ।

ବିଦୂର: (ଆଶ୍ଚେଇ ପଡ଼ିଲେ) ଏ କଣ କହୁଛନ୍ତି ନୂଆବୋହୂ ? ଆପଣ ଯେ କୁରୁବଂଶର ରାଣୀ ! ସମ୍ମାନରେ ମୋର ପୂଜ୍ୟା । ଏଇ ଯେ ଆପଣ ବିଦୂର ବୋଲି ସ୍ନେହରେ ଡାକିଲେ- ଏ ଶୂଦ୍ରାଣୀର ପୁଅ ଆଜି ପ୍ରଥମଥର ପାଇଁ ଅନୁଭବ

କଲା... ତାକୁ ମଧ୍ୟ କିଏ ଜଣେ ମଣିଷ ବୋଲି ମନେ କରେ । ମୁଁ ଆଜି ଅଭିଭୂତ ହୋଇଯାଉଛି ଭାଉଜ... ଆନନ୍ଦରେ ବିହ୍ୱଳ ହୋଇ ଯାଉଛି । ତମେ ଆସିଲା ପରେ ମୋ ଭିତରର ଅଣୁ ପରମାଣୁ ସବୁ ଆଜି ଚଂଚଳ । ଓହ୍ଲାଇ ଆସୁଛନ୍ତି ମୋ ଅନ୍ତରକୁ ଆଲୋକିତ କରି ଲକ୍ଷ ଲକ୍ଷ ତାରକା ମଣ୍ଡଳ । ହୃଦୟର ନିଭୃତରେ ଉଠେ ଆଜି ସହସ୍ର ଶିହର ।

କୁନ୍ତୀ: ଉଠ ବିଦୂର ! ମୋ ସାମ୍ନାରେ ନତଜାନୁ ହୋଇ ବସିଲେ ମୁଁ ବିବ୍ରତ ହୋଇ ପଡୁଛି । ଏଇଠି ମୁଁ ନୂଆ । ଘଟଣା ଦୁର୍ଘଟଣା ବେଳେ ମୁଁ ତମର ପରାମର୍ଶ ନେବି । ନିଭୃତରେ । କଟା ଗୁଡ଼ିପରି ତମ ଆକାଶରେ ।

ବିଦୂର: ମୁଁ ଯିବି ନୂଆବୋଉ ? ଏ ପର୍ଯ୍ୟନ୍ତ ମୁଁ ଝୁଲୁଛି ସମୟ କାଂଧରେ । କେବେ କେବେ ସମୟର ପାଦଚିହ୍ନ ଭିନ୍ନ । ମୁଁ ନିଶ୍ଚୟ ଯାଇ ତମ ନିର୍ଜନତାର ସଖୀ ହେବି ।

କୁନ୍ତୀ: ଋଷି ଦୁର୍ବାସା ମତେ ଗୋପନ ବିଦ୍ୟା ଶିକ୍ଷା ଦେଇଛନ୍ତି ବିଦୂର । ଆବଶ୍ୟକ ହେଲେ ମୁଁ ତମ ଧ୍ୟାନ ଯୋଗରେ ଡକେଇବି । ଶୁଣିବନ୍ତ ବିଦୂର ?

ବିଦୂର: ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ନୂଆବୋଉ । ଆସନ୍ତୁ ଆମେ ବର୍ତ୍ତମାନ ସମ୍ରାଟ ଧୃତରାଷ୍ଟ୍ରଙ୍କୁ ଭେଟିବା । ସେ ଆପଣଙ୍କ ଦେଢ଼ଶୁର । ଶ୍ୱଶୁର ସଦୃଶ୍ୟ । (ବିଦୂର କୁନ୍ତୀଙ୍କୁ ନେଇ ଚାଲିଗଲେ । ଅନ୍ୟପଟୁ ପ୍ରବେଶ କଲେ ଭୀଷ୍ମ ଓ ଧୃତରାଷ୍ଟ୍ର)

ଭୀଷ୍ମ: ତୁମେ ବିଶ୍ୱାସ କରିପାରିବନି ପୁତ୍ର ! କୁନ୍ତୀ ଅସାମାନ୍ୟ ସୁନ୍ଦରୀ । ମୁଁ ତାର ବିନମ୍ରତା ଓ ମାର୍ଜିତ ବ୍ୟବହାର ଦେଖିଲାପରେ ରାଣୀ ହିସାବରେ ତାକୁ ଗ୍ରହଣ ନ କରିବାର ଉପାୟ ନଥିଲା ।

ଧୃତରାଷ୍ଟ୍ର: କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି ପିତୃବ୍ୟ । ପାଣ୍ଡୁଭଳି ଶୀର୍ଣ୍ଣ, ଶାନ୍ତ, ସରଳ ନିର୍ବୋଧ ଓ ନିର୍ବୀର୍ଯ୍ୟ ଅପଦାର୍ଥ ପୁରୁଷଙ୍କୁ କୁନ୍ତୀ ସ୍ୱାମୀ ରୂପରେ କିପରି ଚୟନ କଲା ? ସେ ପରା ଅପୂର୍ବ ସୁନ୍ଦରୀ ?

ଭୀଷ୍ମ: ମୋର ଭୟ ହେଉଛି କୁନ୍ତୀର ସୌନ୍ଦର୍ଯ୍ୟ ହିଁ ହୋଇପାରେ କୁରୁବଂଶ ପାଇଁ ବିପଦ । ତାପାଇଁ କୁଳ ଭାଙ୍ଗିଯାଇପାରେ । କୁରୁବଂଶର ମର୍ଯ୍ୟାଦା ନଷ୍ଟ ହୋଇପାରେ । ଦେଖିବା ଆଗକୁ କଣ ହେଉଛି । ପାଣ୍ଡୁ ଆଉ କୁନ୍ତୀ ତତେ ଦେଖାକଲେଣି ?

ଧୃତରାଷ୍ଟ୍ର: ନା, ଏ ପର୍ଯ୍ୟନ୍ତ ଦେଖା କରିନାହାନ୍ତି ।

ଭୀଷ୍ମ: ତମେ ତ ଦେଖି ପାରୁନାହିଁ ପୁତ୍ର । କୁନ୍ତୀ ଅତି ଚତୁରୀ । ସର୍ବଗୁଣ ସଂପନ୍ନା । ସେମାନଙ୍କ ସାଙ୍ଗରେ ଜଗିରଖି କଥାବାର୍ତ୍ତା କରିବ । ନହେଲେ ତମର ବିଜ୍ଞ ଶାଳକ ଶକୁନିଙ୍କ ସହିତ ପରାମର୍ଶ କରିବ । ମୁଁ ସେପଟେ ନବବଧୂର ବରଣ ପାଇଁ ଯେଉଁ ରାଜକୀୟ ସମାରୋହ ହେବା କଥା, କଣ ହେଲା ବୁଝୁଛି ।

*(ଭୀଷ୍ମ ଯେଉଁ ପଟେ ଗଲେ ତାର ଓଲଟା ପଟୁ ଆସିଲେ ପାଣ୍ଡୁ ଓ କୁନ୍ତୀ)*

ଧୃତରାଷ୍ଟ୍ର: (ସ୍ୱଗତୋକ୍ତି) ମତେ ସବୁ ଦିଶେ ।ଏଇତ ଦେଖୁଚି ଭ୍ରାତା ପାଣ୍ଡୁ ତାର ପତ୍ନୀ କୁନ୍ତୀକୁ ନେଇ ଏଇ ପଟୁ ଆସୁଛି । ମୁଁ ଜ୍ୟେଷ୍ଠ । ହସ୍ତିନାର ନାଯ୍ୟ ସମ୍ରାଟ । ଲକ୍ଷ ଲକ୍ଷ ପ୍ରଜାଙ୍କର ମୁଁ ବଂଚିବା ଉପାୟ । ଅଂଧ ହେଲେ ମଧ୍ୟ ରାଜାକାର୍ଯ୍ୟ ଅତି ସୁନ୍ଦର ଭାବେ ସଂପାଦନ କରିପାରେ । ଏହା ମୋର ଆତ୍ମଶ୍ଳାଘା ନୁହେ, ବାସ୍ତବ ସତ୍ୟ... ବର୍ତ୍ତମାନ କେବଳ ମନେ ହେଉଛି, ଏ ସିଂହାସନ କେବଳ ମୋର ପ୍ରାପ୍ୟ ।

*(ପ୍ରବେଶ କଲେ ଗାନ୍ଧାରୀ । ହାତରେ ଅର୍ଘ୍ୟଥାଳୀ)*

ଗାନ୍ଧାରୀ: (ଆଖିରେ ପଟି ବଂଧା) ଆରେ ! ଆପଣ ଏଇଠି ଏକା ଏକା କାହାସାଙ୍ଗରେ ଗପୁଛନ୍ତି ସମ୍ରାଟ ?

ଧୃତରାଷ୍ଟ୍ର: ନାଇଁ.. ଇଏ... ମାନେ... ପିତୃବ୍ୟ କହିଲେ ପାଣ୍ଡୁ ତାର ପତ୍ନୀକୁ ନେଇ ମୋ ପାଖକୁ ଆସୁଛି... ସେଇଥିପାଇଁ...

ଗାନ୍ଧାରୀ: ଏଇତ ସେମାନେ ଆସିଲେଣି । ମୁଁ ସେମାନଙ୍କୁ ବନ୍ଦାପନା କରି କ୍ଷତ୍ରିୟ କୁଳର ଠାକୁରଘରକୁ ନେଉଛି ।

*(ପ୍ରବେଶ କଲେ ପାଣ୍ଡୁ ଏବଂ କୁନ୍ତୀ)*

ପାଣ୍ଡୁ: ଭ୍ରାତା ପ୍ରଣାମ । ମୁଁ ପାଣ୍ଡୁ । ଦିଗବିଜୟରୁ ଫେରି ଆସିଛି ।

ଧୃତରାଷ୍ଟ୍ର: ଆଉ ତୋର ପତ୍ନୀ କୁନ୍ତୀ ?

କୁନ୍ତୀ: ଭୂମିଷ୍ଠ ପ୍ରଣାମ କରୁଛି ।

ପାଣ୍ଡୁ: ଆପଣ ଏ ଦୀର୍ଘ ସମୟଧରି ରାଜ୍ୟ ଶାସନର ଭାର ବହନ କଲେ । ଆଶା କରୁଛି ରାଜ୍ୟର ସବୁ କୁଶଳ ହୋଇ ରହିଥିବ । ଏଣିକି ମତେ ସିଂହାସନ ଫେରାଇ ଦିଅନ୍ତୁ । ଆଜିଠାରୁ ମୁଁ ରାଜ୍ୟର ଶାସନଭାର ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହୋଇ ଆସିଛି ।

ଧୃତରାଷ୍ଟ୍ର: ଦେଖ ପାଣ୍ଡୁ । ଈଶ୍ୱର ଆଖି ଦୁଇଟିକୁ ଛାଡ଼ିଦେଲେ ତୋର ଏଇ ଜ୍ୟେଷ୍ଠ ଭ୍ରାତାକୁ ସବୁକିଛି ଦେଇଛନ୍ତି । ଅନ୍ଧ ହେଲେ ସୁଦ୍ଧା ମୁଁ ଏଇ କିଛିଦିନ

ସିଂହାସନରେ ବସି ରାଜକାର୍ଯ୍ୟ ସୁଚାରୁ ରୂପେ ପରିଚାଳନା କରିଛି । ରାଜନୈତିକ କ୍ଷମତାର ସ୍ୱାଦ ଏଇ କିଛିଦିନ ମଧ୍ୟରେ ମୋ ଜୀବନରେ ଏକ ଅଭୂତପୂର୍ବ ଉନ୍ମାଦନା ଆଣିଦେଇଛି । ସେଇ ଅନୁଭୂତିଟିକୁ ମୁଁ କାହାକୁ ବୁଝାଇ ପାରୁନି । ବର୍ତ୍ତମାନ କେବଳ ମନେ ହେଉଛି ଏ ସିଂହାସନ ଧର୍ମତଃ, ନ୍ୟାୟତଃ ମୋର ହିଁ ପ୍ରାପ୍ୟ । କାରଣ ମୁଁ ଜ୍ୟେଷ୍ଠଭ୍ରାତା ।

ପାଣ୍ଡୁ: କିନ୍ତୁ ଆପଣ ଜନ୍ମାନ୍ଧ ବୋଲି ପିତୃବ୍ୟ ଭୀଷ୍ମ ମତେ ସିଂହାସନରେ ଅଭିଷିକ୍ତ କରିଥିଲେ । ହସ୍ତିନାର ଅର୍ଥନୀତି ଦୁର୍ବଳ ହେବାରୁ ମତେ ଦିଗବଜୟ ପାଇଁ ପଠାଯାଇଥିଲା । ଆଜି... ମୁଁ ବିବାହିତ । ମୁଁ କେବଳ ଶୁଭ୍ର, ପୁଣ୍ଡ୍ର, ମିଥିଳା ଜୟକରି ପ୍ରଚୁର ଅର୍ଥ, ହସ୍ତୀ ଓ ଅଳଂକାର ଦେଇଛି ହସ୍ତିନା ରାଜକୋଷକୁ । ଆଜି ପୁଣି ମତେ ସିଂହାସନରୁ ବଂଚିତ କରୁଛନ୍ତି ? କଣ ? ମୁଁ କେହି ନୁହେଁ ?

ଧୃତରାଷ୍ଟ୍ର: ଭାଇ ପାଣ୍ଡୁ । କପଟ ନ କରି ମୁଁ ମୋ ମନର କଥାକୁ ତୁମ ଆଗରେ ଖୋଲି କହିଛି । ମଣିଷ ନିଜେ ହିଁ ତାର ଭାଗ୍ୟ ନିର୍ମାତା । ଅଦୃଷ୍ଟର ଚକ୍ରାନ୍ତକୁ ନଷ୍ଟ କରି ମୁଁ ଯେଉଁ ନୂତନ ସୌଭାଗ୍ୟକୁ ଅର୍ଜନ କରିଛି ତାହା ବିଧାତାର ଅବଦାନ ନୁହେଁ । ନିଜ କୂଟ ବୁଦ୍ଧିବଳରେ ତାହା ମୁଁ ହାସଲ କରିଛି । ଅଧିକାର ଅର୍ଜନ ନ କଲେ ତାର ତୀକ୍ଷ୍ଣତା ନଷ୍ଟ ହୁଏ । ଗୌରବ ମଧ୍ୟ ନଷ୍ଟ ହୁଏ । କୃତ କର୍ମପାଇଁ ମୋର କୌଣସି ଦୁଃଖ କି ଅନୁଶୋଚନା ନାହିଁ ।

ପାଣ୍ଡୁ: କିନ୍ତୁ ଭ୍ରାତା !

ଧୃତରାଷ୍ଟ୍ର: ଭ୍ରାତା ନୁହେଁ, ରାଜା ବୋଲି ସମ୍ବୋଧନ କର ।

ପାଣ୍ଡୁ: ଆପଣ ରାଜା ରୂପେ ଅଭିଷିକ୍ତ ହୋଇ ନାହାନ୍ତି ଭ୍ରାତା । ମୁଁ ଅଭିଷିକ୍ତ । ଆପଣ କେବଳ ମୋ ଅନୁପସ୍ଥିତିରେ ରାଜକାର୍ଯ୍ୟ ସଂଭାଳିଥିଲେ । ଆପଣ ଆପଣଙ୍କ ବିବେକକୁ ପଚାରନ୍ତୁ... କୁହନ୍ତୁ ଅଭିଷିକ୍ତ ହୋଇଥିବା ଆପଣଙ୍କ କନିଷ୍ଠ ଭ୍ରାତା ପାଣ୍ଡୁକୁ କେଉଁ ନ୍ୟାୟରେ ସିଂହାସନରୁ ବିତାଡ଼ିତ କରୁଛନ୍ତି ?

ଧୃତରାଷ୍ଟ୍ର: ସ୍ନେହ, ମମତା, ନ୍ୟାୟ-ଧର୍ମ, ସତ୍ୟ ଆଉ ବିବେକ ବୋଲି କିଛି ନାହିଁ । ଏ ଦ୍ୱାପର ଯୁଗରେ ରାଜା ଚାହେଁ କେବଳ ସିଂହାସନ । ବିଜୟ ଓ ଶତ୍ରୁର ବିନାଶ ।

ପାଣ୍ଡୁ: କିଏ ତୁମର ଶତ୍ରୁ ?

ଧୃତରାଷ୍ଟ୍ର: ତୁମେ ଯେହେତୁ ରାଜାସିଂହାସନ ମାଗୁଛ... ତମେ ମୋର ଭାଇ ନୁହଁ,

ଶତ୍ରୁ । ମୋର ପ୍ରତିଦ୍ୱନ୍ଦୀ । ତେଣୁ ତୁମେ ତୁମ ରାସ୍ତା ଦେଖ ।

*(ପ୍ରବେଶ କଲେ ଭୀଷ୍ମ)*

ଭୀଷ୍ମ: ରାଜାର କୌଣସି ଶତ୍ରୁ ରହିବା ବାଞ୍ଛନୀୟ ନୁହେଁ ।

ଧୃତରାଷ୍ଟ୍ର: ତେଣୁ ପାଣ୍ଡୁ ! ତୁମର ହସ୍ତିନାପୁରରେ ରହିବାର ଅଧିକାର ନାହିଁ । ରାଜାର ଅଧିକାର ତ୍ୟାଗ କରି ସପରିବାରେ ତୁମକୁ ସ୍ୱେଚ୍ଛାରେ ବନବାସ କରିବାକୁ ପଡ଼ିବ । ଯାଅ-

ପାଣ୍ଡୁ: ପିତୃବ୍ୟ ! ଆପଣ ଥାଉ ଥାଉ ମୁଁ ରାଜା ରୂପେ ଅଭିଷିକ୍ତ ହୋଇ ବନବାସକୁ ଯିବି ଓ ଆଉ ଜଣେ ଜନ୍ମାନ୍ଧ ହସ୍ତିନାକୁ ଶାସନ କରିବ ?

ଭୀଷ୍ମ: ଜନ୍ମାନ୍ଧ ହେଲେ ମଧ୍ୟ ସିଏ କୁରୁବଂଶର ଜ୍ୟେଷ୍ଠପୁତ୍ର ପାଣ୍ଡୁ । ହସ୍ତିନାର ସିଂହାସନ ଉପରେ ତାର ଅଧିକାର ନାଯ୍ୟ !

କୁନ୍ତୀ: ଏବଂ କ୍ଷମାକରିବେ ପିତୃବ୍ୟ... ହସ୍ତିନାର ଏଇ ଅକିଂଚନ ନବବଧୂ ସହିତ ତାର ସ୍ୱାମୀକୁ ବନବାସରେ ପଠାଇଦେବା ଅଧିକାର ସାବ୍ୟସ୍ତ କରିବା ମଧ୍ୟ କଣ ଆପଣଙ୍କର ନାଯ୍ୟ ଅଧିକାର ? ଶୁଣିଥିଲି ପିତୃବ୍ୟ ଆମର ନିରପେକ୍ଷ ।

ଭୀଷ୍ମ: ସେଇଟା ମୋର ଆଦେଶ ନୁହେ, ହସ୍ତିନାର ସମ୍ରାଟ ଧୃତରାଷ୍ଟ୍ରଙ୍କର ଆଦେଶ ।

କୁନ୍ତୀ: ଆପଣଙ୍କ ଉପସ୍ଥିତିରେ ସେ ଆଦେଶ ଦିଆଯାଇଛି ପିତୃବ୍ୟ ଏବଂ ଆପଣଙ୍କର ମୌନତା ହିଁ ସମ୍ମତିର ଲକ୍ଷଣ । ମୁଁ ଅଳ୍ପକ୍ଷଣ ହେଲା ହସ୍ତିନାର ରାଜପ୍ରାସାଦକୁ ରାଣୀ ହୋଇ ଆସିଛି ପିତୃବ୍ୟ । ସ୍ୱାମୀ ମୋର ବହୁ ରାଜ୍ୟ ଜୟ କରି ହସ୍ତିନାର ରାଜକୋଷକୁ ସମୃଦ୍ଧ କରି ଫେରିଛନ୍ତି । ସେ ହେଉଛନ୍ତି କୁରୁବଂଶର ଅଭିଷିକ୍ତ ରାଜା । ଦେଢ଼ଶୁର ମୋର ତାଙ୍କ ଅନୁପସ୍ଥିତିରେ ରାଜ୍ୟକାର୍ଯ୍ୟ ଚଳାଉ ଚଳାଉ ଆପଣ ତାକୁ ସମ୍ରାଟ କରିଦେଲେ ? ଏଇଟା ଆପଣଙ୍କର କୁରୁବଂଶର ମର୍ଯ୍ୟାଦା ? ଏଇଟା ଆପଣଙ୍କର କୁରୁବଂଶର ଆଭିଜାତ୍ୟ ? ଏଇଟା ଆପଣଙ୍କର କୁରୁବଂଶର ନ୍ୟାୟ ?

ଭୀଷ୍ମ: ରାଣୀ ! (କ୍ରୋଧରେ ଥରି ଉଠିଲେ) ତମେ ଭୋଜରାଜ୍ୟର କନ୍ୟା । ଆର୍ଯ୍ୟରମଣୀ ନୁହଁ ! ଏତିକି ଟିକେ ରାଜ୍ୟ ତମର । ତମେ କେମିତି ଜାଣିବ କୁରୁବଂଶର ଆଭିଜାତ୍ୟ ? କୁରୁବଂଶର ନ୍ୟାୟ ?

କୁନ୍ତୀ: ମୁଁ ଜାଣିନଥିଲି ପରମ ମାନନୀୟ ପିତୃବ୍ୟ ମହାଶୟ ! ମୋର ଅଶ୍ୱନଦୀର ଦେଶରେ ମହାରଥୀ ଭୀଷ୍ମଙ୍କର ବହୁ ପ୍ରଶଂସା ଶୁଣିଛି ମୁଁ । ବହୁ ପ୍ରଶଂସା ଶୁଣିଛି ଆପଣଙ୍କ ଏକାଗ୍ରତା, ଆପଣଙ୍କର କୂଟନୀତି ଏବଂ ରାଜନୈତିକ

ବିଚକ୍ଷଣତା ବିଷୟରେ । ମୋର ପିତା ଶୂରସେନ ଓ ପିତାମହ ମାନେ ହେଲେ ପୁରୁରବା ଓ ଯଯାତି । ହୋଇପାରେ ମୁଁ ଗୋଟିଏ ଛୋଟିଆ ରାଜ୍ୟର କନ୍ୟା.... ତଥାପି ମୁଁ ଯେତେବେଳେ ଆଜି ଆପଣଙ୍କ ଆଗରେ ମୁହଁ ଖୋଲି ପ୍ରତିବାଦ କରୁଛି... ଜାଣି ରଖନ୍ତୁ ପିତୃବ୍ୟ... ଆପଣ କରୁଥିବା ପକ୍ଷପାତିତା ଓ ଅନ୍ୟାୟ ବିରୁଦ୍ଧରେ ହିଁ ମୁଁ ସ୍ୱର ଉତ୍ତୋଳନ କରୁଛି ।

ଭୀଷ୍ମ: କାହିଁକି ? ଏ ପର୍ଯ୍ୟନ୍ତ ହସ୍ତିନା ରାଜ ପ୍ରସାଦର ଏରୁଣ୍ଡି ମଧ ଡେଇଁ ନାହଁ ତମେ । ତମର ସାହସ ହେଲା କିପରି ମୋ ସାମ୍ନାରେ ମୋ କୁରୁବଂଶର ନ୍ୟାୟ-ଅନ୍ୟାୟ ସଂପର୍କରେ ମନ୍ତବ୍ୟ ଦେବା ପାଇଁ? ଜଣାପଡୁଛି ତମେ କୁରୁବଂଶର ରାଣୀ ହେବା ପାଇଁ ଅଯୋଗ୍ୟ ! ଆଉ ପୁତ୍ର ପାଣ୍ଡୁ । ତୁମକୁ ମୁଁ ଦିଗବିଜୟରେ ପଠାଇଥିଲି । ଯଦି କୌଣସି ସଂଭ୍ରାନ୍ତ ରାଜ୍ୟରୁ ରାଜକନ୍ୟାଟିଏ ଲୁଣ୍ଠନ କରି ଆଣିଥାନ୍ତ, ସେଇଟା ହେଇଥାନ୍ତା ହସ୍ତିନାର ଗୌରବ । କିନ୍ତୁ ତୁମେ କଲ କଣ ? ତୁମେ କୁନ୍ତୀଭୋଜର ସ୍ୱୟଂବର ରେ ଯୋଗ ଦେଲ ଏବଂ ତୁମର ରୂପ ଦେଖି ଏଇ ଝିଅଟା ବରଣମାଳା ଦେଇଦେଲା । ମୁଁ ଜାଣେ କୃଷ୍ଣ ଦ୍ୱୈପାୟନ ଏ ଚକ୍ରାନ୍ତ କରି ତୁମକୁ ସେଇଠି କି ନେଇ ଥିଲା । ବର୍ତ୍ତମାନ ମୋର ସଂନ୍ଦେହ ହେଉଛି ତୋର ପତ୍ନୀ ଆର୍ଯ୍ୟ ନା ଅନାର୍ଯ୍ୟ ? ତେଣୁ ମୁଁ ତୋର ଦ୍ୱିତୀୟ ବିବାହ କରେଇବି । ବିଶୁଦ୍ଧ ଆର୍ଯ୍ୟବଂଶ ରାଜତ୍ୱ କରୁଥିବା ମଦ୍ର ଦେଶରେ ସୁନ୍ଦରୀ ବିଚକ୍ଷଣ କନ୍ୟାଟିଏ ଅଛି । ଆସନ୍ତା ଶୁକ୍ଳପଞ୍ଚମୀରେ ତାଙ୍କ ସହିତ ତୋର ବିବାହ ହେବ ।

ପାଣ୍ଡୁ: ଯଦି ଏହା ଆପଣଙ୍କ ଆଦେଶ ତାହେଲେ ମୁଁ ମନା କରିବା ପାଇଁ କିଏ ?

କୁନ୍ତୀ: ଏଇଟା ପୁଣି ଗୋଟିଏ ରାଜନୈତିକ ଚକ୍ରାନ୍ତ ପିତୃବ୍ୟ ! ମାଦ୍ରୀ ଜଣେ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ହୋଇପାରେ । ତା ସହିତ ମୋ ସ୍ୱାମୀଙ୍କର ବିବାହ କରେଇ ଆପଣ ମୋ ସ୍ୱାମୀଙ୍କୁ ମୋଠାରୁ ଦୂରେଇ ରଖିବାର ଚକ୍ରାନ୍ତ କରୁଛନ୍ତି । ମୋ ପାରିବାରିକ ଜୀବନରେ ଅଯଥା ଅଶାନ୍ତିର ଝଡ଼ ସୃଷ୍ଟି କରିବାକୁ ଚାହୁଁଛନ୍ତି । ଆପଣ ଆର୍ଯ୍ୟ-ଅନାର୍ଯ୍ୟର କାଂଥ ତିଆରି କରି ବର୍ଣ୍ଣ ବୈଷମ୍ୟର ବୀଜ ବପନ କରୁଛନ୍ତି । କିନ୍ତୁ ମନେ ରଖନ୍ତୁ ମୋ ନାଁ ମଧ କୁନ୍ତୀ ... ଯଯାତି ଓ ପୁରୁରବାଙ୍କ ରକ୍ତ ମୋ ଦେହରେ ପ୍ରବାହିତ ହେଉଥିବା ଯାଏଁ ମାଦ୍ରୀ ସହିତ ମୋର କଳହ ହେବନାହିଁ । ମାଦ୍ରୀ ହେବ ମୋର ସାନଭଉଣୀ । ଆସନ୍ତୁ ମହାରାଜ... ଏ ପ୍ରାସାଦରେ ନ୍ୟାୟର ସବୁ ଦ୍ୱାର ରୁଦ୍ଧ । ମଣିଷ ସହ ମଣିଷର ସଂପର୍କର

କୌଣସି ଅର୍ଥ ନାହିଁ ଏଇ ରାଜପ୍ରାସାଦରେ । ଏଇଟା ଗୋଟାଏ କ୍ଷମତାର ଅଂଧକୂପ । ସବୁଠାରୁ ଭଲ ହେବ ଆମେ ହସ୍ତିନା ତ୍ୟାଗ କରି ବନବାସକୁ ଚାଲିଯିବା । (ଟାଣି ଟାଣି ନେଇଗଲେ ପାଣ୍ଡୁଙ୍କୁ । ଅବାକ୍ ହୋଇ ଚାହିଁ ରହିଥିଲେ ପିତୃବ୍ୟ ଭୀଷ୍ମ । ଅନିଚ୍ଛା ସତ୍ତ୍ୱେ ସେ କହିଲେ)

ଭୀଷ୍ମ: ଆଶ୍ଚର୍ଯ୍ୟ ଏ କୁନ୍ତୀର ଆସ୍ପର୍ଦ୍ଧା । ବିନମ୍ରତାର ଆଢୁଆଳରେ ସେ କହୁଛି ସାଂଘାତିକ କଥା । ପାଣ୍ଡୁକୁ ବାଂଧି ରଖିଛି ତା କାନିରେ ପେଣ୍ଟାଏ ଚାବିକାଠି ପରି । ପାଣ୍ଡୁ କୁନ୍ତୀର ଅନୁଗତ ଓ ବାଧ୍ୟ ସ୍ୱାମୀ । ସେଥିପାଇଁ କୁନ୍ତୀକୁ ସେ ପ୍ରତିବାଦର ଭାଷା କହିବାରୁ ନିବୃତ୍ତ କରାଉନଥିଲା । ଏ ସୁନ୍ଦରୀର ଅହଂକାର ଭାଙ୍ଗିବାକୁ ପଡ଼ିବ । ଏହାର ଏକମାତ୍ର ଉପାୟ- ମଦ୍ର ଦେଶର ରାଜକନ୍ୟା ସହ ପାଣ୍ଡୁର ଦ୍ୱିତୀୟ ବିବାହ ମୁଁ କରେଇବି । ପ୍ରଥମ କାରଣ ମାଦ୍ରୀ ବିଶୁଦ୍ଧ ଆର୍ଯ୍ୟକନ୍ୟା ଓ ସୁନ୍ଦରୀ । ଦ୍ୱିତୀୟ କାରଣ- ମୁଁ କୃଷ୍ଣ ଦ୍ୱୈପାୟନ ବ୍ୟାସର ଚକ୍ରାନ୍ତର ଉପଯୁକ୍ତ ଜବାବ ଦେବି । ମତେ ନ ପଚାରି ଦ୍ୱୈପାୟନ ପାଣ୍ଡୁକୁ କୁନ୍ତୀଭୋଜର ସ୍ୱୟଂବରକୁ ନେଇଯାଇଥିଲେ । ବର୍ତ୍ତମାନ ମାଦ୍ରୀକୁ ପାଣ୍ଡୁସାଂଗରେ ଛଂଦି ଦେଲେ ସିଏ ତାକୁ ନେଇ କିଛିଦିନ ଖେଳିବ ଆଉ କୁନ୍ତୀକୁ ଅବହେଳା କରିବ । ତାହା ହିଁ ହେବ କୁନ୍ତୀ ପାଇଁ ଉପଯୁକ୍ତ ଶାସ୍ତି ।
*(ଆଲୋକ ଅସ୍ତମିତ ହେଲା । ଶାହାନାଇ ଓ ଟିକିରାର ଆଳାପରେ । ବାଣ ଫୁଟିଲା ଓ ବିବାହର ରାଜକୀୟ ଆଡ଼ମ୍ବରର କିଛି ଆଭାସ ଦିଆଗଲା । ଆଲୋକ ଆସିଲା ବେଳକୁ ଦୃଶ୍ୟ ପରିବର୍ତ୍ତନ)*

## ଦୃଶ୍ୟ-୧୮

*ଦର୍ଶକମାନଙ୍କ ପଛପଟୁ ପଟୁଆରରେ ଆସିଲେ ମଦ୍ର ରାଜକୁମାରୀ ମାଦ୍ରୀ । କେରାଏ ଆଲୁଅ ପଡ଼ିଲା ସେଇ ପଟକୁ ଯୋଉ ପଟୁ ମାଦ୍ରୀ ଆସିବେ । ଗୋଟିଏ ଶଂଖ ବାଜିଲା ଓ ହୁଳହୁଳି ପକାଇ ବିପରୀତ ଦିଗରୁ ଅନ୍ତଃପୁର ଭିତରକୁ ୱିଙ୍ଗସ୍ ପାଖରୁ ହିଁ ତାକୁ ସଂଖୁଳି ଆଣିଲେ ଅନ୍ତଃପୁର ଭିତରକୁ । ମଧ ମଂଚକୁ ଆସି ଠିଆ ହେଲା ପରେ ଶଂଖ ଓ ହୁଳହୁଳି ବଂଦ ହେଲା । ସୁସ୍ୱାଗତ କରିବା ପାଇଁ ଠିଆ ହୋଇଥିଲେ କୁନ୍ତୀ ।*

କୁନ୍ତୀ: ଆସ ମାଦ୍ରୀ । କନିଷ୍ଠା ମୋର । ହସ୍ତିନାର ଅନ୍ତଃପୁରରେ ତୁମକୁ ସଂଖୁଳି ନବା ପାଇଁ କେହି ନଥାନ୍ତୁ... କିଛିଯାଏ ଆସେ ନାହିଁ... ମୁଁ ଅଛି... କୁନ୍ତୀ । ତମର ସପତ୍ନୀ ।

ମାଦ୍ରୀ: ରାଜପ୍ରାସାଦରେ କେହି ନାହାନ୍ତି ? କେମିତି ?

କୁନ୍ତୀ: ହସ୍ତିନାର ପ୍ରାସାଦରେ କିଛି ନାହିଁ ଭଉଣୀ । ନ୍ୟାୟ ନାହିଁ । ଧର୍ମ ନାହିଁ ସ୍ନେହ ନାହିଁ, କାମ ନାହିଁ କ୍ଷୁଧାରୁ ତୁଷ୍ଟି ନାହିଁ । କିଛି ନାହିଁ । ହେଲେ ମୁଁ ଅଛି ମାଦ୍ରୀ । କିଛି ଚିଂତା ନାହିଁ ।

ମାଦ୍ରୀ: ମୋର ଭାଗ୍ୟ ଅପା । କୁରୁବଂଶର ମରୁଭୂମିରେ ତମେ ମୋ ପାଇଁ ଏକମାତ୍ର ଉଦ୍ୟାନ ପରି ସତେଜ ଅଛ ।

କୁନ୍ତୀ: ନା, ଆମେ ଦି ଜଣ ସୁଖରେ ରହିବା । ଆମକୁ ସୁଖର ପନ୍ଥା ଖୋଜିବାକୁ ପଡ଼ିବ । ଆମ ଭିତରେ ସପତ୍ନୀଗତ ବିଦ୍ୱେଷ ରହିବ ନାହିଁ । ବିଭେଦ ଆଉ ଘୃଣାର ପାଚେରୀ ରହିବ ନାହିଁ । ଆମେ ଚଳିବା ଦୁଇଭଉଣୀ ପରି । ନହେଲେ ପିତୃବ୍ୟଙ୍କ ରାଜନୀତିର ଜବାବ ଦେଇପାରିବାନାହିଁ ।

ମାଦ୍ରୀ: ଭୀଷ୍ମଙ୍କ ରାଜନୀତି ? ମୁଁ କିଛି ବୁଝିପାରୁନାହିଁ ଅପା ।

କୁନ୍ତୀ: ଗୋଟିଏ କଥା ମନେରଖିଥିବ ମାଦ୍ରୀ । ଦ୍ୱାପର ଯୁଗରେ ବିବାହ ଏକ ପାରିବାରିକ ସଂପର୍କ ନୁହେ । ମାନବିକ ସଂପର୍କ ନୁହେଁ । କେବଳ ଏକ କୂଟନୈତିକ ସଂପର୍କ । ଆମର ପିତୃବ୍ୟ ମହାରଥୀ ଭୀଷ୍ମ ଆମ ସ୍ୱାମୀଙ୍କୁ ହସ୍ତିନାର ରାଜସିଂହାସନରେ ବସେଇ ଦେବାକୁ ଋହାନ୍ତି ନାହିଁ । ଅଥଚ ସେ ପରମବୀର ଓ ନ୍ୟାୟବନ୍ତ ଯୋଦ୍ଧା ବୋଲି ହସ୍ତିନାର ରାଜକୋଷକୁ ସମୃଦ୍ଧ କରିଛନ୍ତି ।

କୁନ୍ତୀ: ତଥାପି ସେ ଆମ ଦେଢ଼ଶ୍ୱଶୁର ଧୃତରାଷ୍ଟ୍ରଙ୍କୁ ହସ୍ତିନାର ସମ୍ରାଟ କରିବାକୁ ଚାହାନ୍ତି ଏବଂ ଆମକୁ ସ୍ୱଇଚ୍ଛାରେ ବନବାସ କରିବା ପାଇଁ ଶତଶୃଙ୍ଗ ପର୍ବତକୁ ପଠେଇ ଦେବାକୁ ଆଦେଶ ଦେଇଛନ୍ତି ।

ମାଦ୍ରୀ: ଶତଶୃଙ୍ଗ ପର୍ବତଟା ସୁନ୍ଦର ଯାଗା ? ମୁଁ ହିମାଳୟ ଛଡ଼ା ଆଉ କୋଉ ଅରଣ୍ୟ ଦେଖିନାହିଁ ଅପା । ଆମେ ବନବାସରେ ଯିବା । ତମେ ମୋ ସାଙ୍ଗରେ ଥିବ ।

କୁନ୍ତୀ: ଆସ ଭିତରକୁ ଯିବା । ମୁଁ ସମସ୍ତଙ୍କ ସାଙ୍ଗରେ ପରିଚୟ କରେଇଦେବି ।

## ଦୃଶ୍ୟ-୧୯

*ହସ୍ତିନା ରାଜପ୍ରାସାଦ, କ୍ଷିପ୍ରଗତିରେ ପ୍ରବେଶ କଲେ କୃଷ୍ଣ ଦ୍ୱୈପାୟନ ।*

ଦ୍ୱୈପାୟନ: ମୁଁ ନିଜର ପରିଚୟ ଦେବା ଅନାବଶ୍ୟକ । ହସ୍ତିନାପୁରକୁ ଅନେକ ଦିନ ହେଲା ଆସିନଥିଲି । ଏବେ ବାଧ୍ୟ ହୋଇ ଆସିଲି- ଭୀଷ୍ମ ଧୃତରାଷ୍ଟ୍ରର ପକ୍ଷ ନେଇ ପାଣ୍ଡୁକୁ କପଟ କରି ବନବାସରେ ପଠେଇ ଦେଉଛି ବୋଲି । ଅବଶ୍ୟ, ଧୃତରାଷ୍ଟ୍ର ଓ ପାଣ୍ଡୁ ଉଭୟେ ମୋର ପୁତ୍ର । କିନ୍ତୁ ଭୀଷ୍ମ କାହିଁକି ସେମାନଙ୍କ ଭିତରେ ଶତୃତା ସୃଷ୍ଟି କରୁଛି ? ଧୃତରାଷ୍ଟ୍ର ଅମ୍ୱାର କ୍ଷେତ୍ରଜ ପୁତ୍ର । ମୋର ଔରସରୁ ଜନ୍ମ । କିନ୍ତୁ ସେ ଜନ୍ମାନ୍ଧ । ସେଇଥିପାଇଁ ପ୍ରଜାମାନେ ତାକୁ ରାଜ୍ୟଭାର ନଦେଇ କନିଷ୍ଠ ଭ୍ରାତା ପାଣ୍ଡୁକୁ ରାଜାପଦରେ ଅଭିଷିକ୍ତ କରିଥିଲେ । ପୁତ୍ର ପାଣ୍ଡୁକୁ ବର୍ତ୍ତମାନ ସ୍ୱଇଚ୍ଛାରେ ବନକୁ ଯାଅ ବୋଲି କହିବାର ତାତ୍ପର୍ଯ୍ୟ କଣ ହୋଇପାରେ ?

*(ବିପରୀତ ଦିଗରୁ ପ୍ରବେଶ କଲେ ଭୀଷ୍ମ । କୃଷ୍ଣ ଦ୍ୱୈପାୟନଙ୍କୁ ଦେଖି ଅବାକ୍ ହୋଇଗଲେ)*

ଭୀଷ୍ମ: କିଏ କୃଷ୍ଣ ଦ୍ୱୈପାୟନ ? ମୋ ହସ୍ତିନାର ରାଜପ୍ରାସାଦ ଭିତରେ ପଶିବାର ଅଧିକାର କିଏ ଦେଲା ତମକୁ ?

ଦ୍ୱୈପାୟନ: ଅବଶ୍ୟ ଏକଥା ସତ୍ୟ ମୋର ମାତା ସତ୍ୟବତୀ ବର୍ତ୍ତମାନ ଜୀବିତ ନାହାନ୍ତି । କିନ୍ତୁ ତମେ ଭୁଲିଯାଉଛ ଭୀଷ୍ମ ! ଧୃତରାଷ୍ଟ୍ର ଓ ପାଣ୍ଡୁ ଉଭୟେ ମୋ ଔରସରୁ ଜାତ ! ତମେ ସେ ଦୁଇଜଣକ ଭିତରେ କଳହର ମଂଜି ବୁଣିବ ଆଉ ମତେ କହିବ ମୁଁ ଏଇଠିକି କାହିଁକି ଆସିଛି ? ମନେରଖ ଏଇ ରାଜପ୍ରାସାଦରେ ତମର ଯେତିକି ଅଧିକାର ଅଛି ମୋର ମଧ୍ୟ ସେତିକି ଅଧିକାର ଅଛି ।

ଭୀଷ୍ମ: ଯଦି ସେତିକି ଅଧିକାର ଅଛି ତମେ ପାଣ୍ଡୁକୁ ନେଇ କୁନ୍ତୀଭୋଜ ଭଳି ଗୋଟେ ଅର୍ବାଚୀନ ରାଜାର ସ୍ୱୟଂବର ସଭାକୁ ଯାଇଥିଲ କାହିଁକି ? ପାଣ୍ଡୁପାଇଁ କଣ ରାଜକନ୍ୟା ଅଭାବ ଥିଲେ ? ସେଇଥିପାଇଁ ମୁଁ ମାଦ୍ରୀ ସହିତ ତାର ବିବାହ କରେଇଛି ।

ଦ୍ୱୈପାୟନ: ଦ୍ୱିତୀୟବାର । ତମେ କାହାକୁ ପଚାରି ଧୃତରାଷ୍ଟ୍ରର ବାହାଘର ଗାନ୍ଧାର ଦେଶରେ କଲ ? ପଚାରିବା କଥା ଛାଡ଼ । ବାହାଘରକୁ ମତେ ନିମନ୍ତ୍ରଣ ବି କଲନାହିଁ ।

ତମେ କଣ ଜାଣିନାହଁ ଧୃତରାଷ୍ଟ୍ର ମୋର ସଂତାନ ବୋଲି ? ତମେ କଣ ଜାଣିନାହଁ - ତା ବାହାଘରେ ଯଦି କାହାକୁ ପ୍ରଥମେ ନିମନ୍ତ୍ରଣ କରାଯିବା କଥା ତା'ହେଲେ ମତେ ନିମନ୍ତ୍ରଣ କରାଯିବା ଉଚିତ୍ ବୋଲି ?

ଭୀଷ୍ମ: ଦ୍ୱୈପାୟନ ! ମୁଁ ବିଶୁଦ୍ଧ ଆର୍ଯ୍ୟଦେଶ ଗାନ୍ଧାରରୁ କୁରୁବଂଶର ଜ୍ୟେଷ୍ଠା ବୋହୂ ଆଣିଛି । ତମକୁ ନିମନ୍ତ୍ରଣ ପତ୍ର ଦିଆଗଲା ନାହିଁ । କାରଣ ତମେ ଆର୍ଯ୍ୟନୁହ, ଅନାର୍ଯ୍ୟ ! ତମର ଦେହର ରଂଗ ଗୌରବର୍ଣ୍ଣର ନୁହେଁ - ତମେ କୃଷ୍ଣକାୟ । ତମେ ମୋର ଶୂଦ୍ର ବିମାତା ସତ୍ୟବତୀଙ୍କ ପୁତ୍ର ।

ଦ୍ୱୈପାୟନ: ଜାଣେ । ସବୁକିଛି ଜାଣେ । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ଚିରକାଳ ଧରି ନିଷ୍ପେଶିତ କରି ରଖିବାକୁ ଚାହାନ୍ତି । ଅବଜ୍ଞା କରନ୍ତି ସେମାନଙ୍କୁ । ଶ୍ୱେତାଙ୍ଗ ଆର୍ଯ୍ୟମାନେ ଭାବନ୍ତି କୃଷ୍ଣକାୟ ଅନାର୍ଯ୍ୟମାନେ ବଣର ମଣିଷ । ତମେ ସେମିତି ଗୋଟେ ଗୋରା ଚେହେରାକୁ ଶ୍ରେଷ୍ଠ ଚେହେରା ମନେ କରୁଥିବା ପକ୍ଷପାତୀ ଆର୍ଯ୍ୟ ! ଏ ଦ୍ୱାପର ଯୁଗରେ ଗୋରା କଳାର କିଛି ମାନେ ଅଛି ? ତମେ ହସ୍ତିନାରେ ଅଯଥା ବର୍ଣ୍ଣବିଦ୍ୱେଷ ସୃଷ୍ଟି କରୁଛ ।

ଭୀଷ୍ମ: କୁରୁବଂଶର ସମ୍ମାନ ରକ୍ଷାକରିବା ପାଇଁ, ପିତାଙ୍କ ଗୁପ୍ତ କାମନା ମାନଙ୍କୁ ଚରିତାର୍ଥ କରିବା ପାଇଁ ମୁଁ ଆର୍ଯ୍ୟମାନଙ୍କର ସିଂହାସନରେ ବସି କ୍ଷମତାକୁ ହାତେଇ ନାହିଁ ଦ୍ୱୈପାୟନ । ବିବାହ ନ କରି ଆଜୀବନ ବ୍ରହ୍ମଚାରୀ ହୋଇ ଏଇ ଉଆସ ଭିତରେ ବସି ରହିଛି । ଖାଲି କୁଳର ମର୍ଯ୍ୟାଦାପାଇଁ

ଦ୍ୱୈପାୟନ: ସେଇଟା ତମର ଛଦ୍ମବେଶ ଭୀଷ୍ମ ! ଆର୍ଯ୍ୟମାନଙ୍କର କପଟ ସଭ୍ୟତା, *(ପ୍ରବେଶ କଲେ ବିଦୂର)*

ବିଦୂର: ଆପଣମାନେ ମୋର ପିତୃସ୍ଥାନୀୟ । ଉଭୟେ ମୋର ନମସ୍ୟ । କିନ୍ତୁ ଆପଣମାନେ ଏତେ ଉଚ୍ଚସ୍ୱରରେ ପରସ୍ପରଙ୍କ ସହିତ କଳହ କରୁଛନ୍ତି ଯେ ମୁଁ ସେପଟେ ଦରବାରରୁ ଖବର ପାଇ ଆସୁଛି । କ୍ଷମା କରିବେ ଆଉ ଦୋଷ ମାର୍ଜନା କରିବେ । ଆସନ୍ତୁ ଆମେ ସମ୍ରାଟ ଧୃତରାଷ୍ଟ୍ରଙ୍କ ପାଖକୁ ଯିବା ।

ଭୀଷ୍ମ: ମୋର ଦରକାର ନାହିଁ ଧୃତରାଷ୍ଟ୍ରର ଦରବାରକୁ ଯିବା । ତାର ବାହାଘରର ନିମନ୍ତ୍ରଣ କାହିଁକି ଗଲା ନାହିଁ କୃଷ୍ଣ ଦ୍ୱୈପାନୟନଙ୍କ ପାଖକୁ ? ସେଇ ରାଗରେ ପାଣ୍ଡୁକୁ ନେଇ କୁନ୍ତୀ ସାଙ୍ଗରେ ବିବାହ କରେଇଛନ୍ତି । ବାହାରକୁ କବି ବ୍ୟାସ । ମହାଭାରତରେ ଇତିହାସ ଲେଖୁଛନ୍ତି କାବ୍ୟରେ । ଅଥଚ ଭିତରେ ସେ ଜଣେ କୂଟନୀତିଜ୍ଞ । ତାକୁ ନେଇ ତାଙ୍କ ପୁତ୍ର ଧୃତରାଷ୍ଟ୍ର ସାଙ୍ଗରେ

ମିଶାଅ ମୁଁ ଯାଉଛି ବିଦୁର । କିନ୍ତୁ ଯିବା ପୂର୍ବରୁ ତମକୁ ସୂଚେଇ ଦଉଛି ଦ୍ୱୈପାୟନ ! କୁନ୍ତୀ ଗୋଟେ କ୍ଷୁଦ୍ର ରାଜ୍ୟରୁ ଆସିଛି । ହସ୍ତିନା ରାଜପ୍ରାସାଦର ବଧୂ ହେବା ପାଇଁ ସେ ଅଯୋଗ୍ୟ ।

(ଚାଲିଗଲେ ଭୀଷ୍ମ । ଆବହ ସଂଗୀତ)

ବିଦୁର: (ଦ୍ୱୈପାୟନଙ୍କୁ) ପିତା ! !

ଦ୍ୱୈପାୟନ: ତୁ କାହିଁକି ବୁଝିପାରୁନୁ ବିଦୁର - ଧୃତରାଷ୍ଟ୍ର ଏବଂ ପାଣ୍ଡୁ ଭାଇ ଭାଇ ହେଲେ ମଧ୍ୟ ସେମାନେ ଏକ ଗୋତ୍ର, ଏକ ବର୍ଣ୍ଣର ନୁହନ୍ତି । ସେମାନଙ୍କର ମାତାମାନେ ମଧ୍ୟଭିନ୍ନ । ତଥାପି ସେମାନେ ରାଜପୁତ୍ର । ଆଉ ତୁ ହେଲୁ ଗୋଟାଏ ଶୁଦ୍ରାଣୀ ଦାସୀର ପୁତ୍ର । ଏ କୁରୁବଂଶର କେହି ନୁହେଁ । କାହିଁକି ? ତୋର ଜନନୀ ଅନାର୍ଯ୍ୟ ଆଉ ଶୂଦ୍ର ରମଣୀ ବୋଲି ସେ ବିଚିତ୍ରବୀର୍ଯ୍ୟଙ୍କର ବିବାହିତ ପତ୍ନୀ ନଥିଲା । ଏହାହିଁ ତୋର ଅପରାଧ । ଏଣୁ ଭୀଷ୍ମ ତତେ ସହ୍ୟ କରିପାରିଲେ ନାହିଁ । ଜ୍ୟେଷ୍ଠ ହେଲେ ମଧ୍ୟ ତୁ ସାମାନ୍ୟ ଗୋଟାଏ ମଂନ୍ତ୍ରୀ ।

ବିଦୁର: ହଁ, ମୋର ଜନନୀ ଆଦ୍ରିକା ବିଚିତ୍ରବୀର୍ଯ୍ୟଙ୍କର ପତ୍ନୀ ହେବାର ସ୍ୱପ୍ନ ଦେଖିଥିଲେ । ସେ ଅନାର୍ଯ୍ୟ ରମଣୀ ହୋଇଥିବାରୁ ସେ ସ୍ୱପ୍ନ ଚୁରମାର ହୋଇଗଲା । ସାଧାରଣ ଜୀବନଯାତ୍ରାରୁ ବିଚ୍ୟୁତ ହୋଇ ପଡ଼ିବା ଭଳି ଜୀବନଯାପନ କରିବାକୁ ପଡ଼ିଥିଲା ତାକୁ । ସେଇଟା କାହାର ଦୋଷ ପିତା ? ମୋର ଜନନୀଙ୍କ ଭାଗ୍ୟର ? ସମାଜର ଅବିଚାରର ? (ଆବହ ସଂଗୀତ) ହେ ବ୍ୟାସଦେବ ! ଆପଣତ ଜନନୀଙ୍କ ମନର ସମସ୍ତ କଥା ଜାଣନ୍ତି । ପ୍ରତ୍ୟେକ ମଣିଷ ଭିତରେ ପ୍ରତିଶୋଧର ସ୍ପୃହା ଲୁଚି ରହିଛି । ଆପଣ ମୋରି ମାଧ୍ୟମରେ ସେଇ ଭାବନାକୁ ପୁଣିଥରେ ଉଜ୍ଜୀବିତ କରୁନାହାନ୍ତିତ ?

ଦ୍ୱୈପାୟନ: ତାର ଅନେକ କାରଣ ଅଛି ବିଦୁର । ତୁମ ତିନିଭାଇଙ୍କ ମଧ୍ୟରେ ତୁହିଁ ରାଜପଦ ପାଇଁ ଯୋଗ୍ୟତମ ବ୍ୟକ୍ତି । ହସ୍ତିନାର ରାଜା ଧୃତରାଷ୍ଟ୍ର ହେବ ନା ପାଣ୍ଡୁ ହେବ ସେ ପ୍ରସଂଗ ଭୀଷ୍ମ ମତେ ପଚାରିଥିଲେ । ସେତେବେଳେ ମୁଁ କାହାର ନାମ ନ ନେଇ ମୁଁ ସେମାନଙ୍କୁ ନୃପତି ନିର୍ବାଚନର ଗୁଣ ଗୁଡ଼ିକ କହିଥିଲି । ଗୁଣ ଗୁଡ଼ିକ ତତେ ଆଖି ଆଗରେ ରଖି କହିଥିଲି । ହେଲେ ଆଶ୍ଚର୍ଯ୍ୟର କଥା ଭୀଷ୍ମ ଥରେ ହେଲେ ମଧ୍ୟ ତୋର ନାମ ଉଚ୍ଚାରଣ କଲେ ନାହିଁ । ତତେ ରାଜସିଂହାସନରୁ ବଂଚିତ କରିବା ହିଁ ସେମାନଙ୍କ ଉଦ୍ଦେଶ୍ୟ ଥିଲା । ଅନ୍ଧ ବୋଲି ଧୃତରାଷ୍ଟ୍ର ଯେମିତି ଅଯୋଗ୍ୟ ପାଣ୍ଡୁ ମଧ୍ୟପୁରୁଷତ୍ୱ ହୀନ ଅପଦାର୍ଥ

ଏବଂ ଅଯୋଗ୍ୟ । ତଥାପି ବିଚିତ୍ରବୀର୍ଯ୍ୟଙ୍କ ଦୁଇପତ୍ନୀଙ୍କ ଗର୍ଭଜାତ ସଂତାନ ବୋଲି ସେମାନଙ୍କର ସିଂହାସନ ଉପରେ ଅଧିକାର ଅଛି । ଆଉ ତୁ ହେଲୁ ଦାସୀପୁତ୍ର । ଅନାର୍ଯ୍ୟ, ଆଶ୍ରିତ, ଅନୁଗ୍ରାହୀ । ତୁ ପାଇଲୁ ସାମାନ୍ୟ ମଂନ୍ତ୍ରୀପଦ ।

ବିଦୂର: ଅଦୃଷ୍ଟକୁ ଆଦରି ନେଇ ମୁଁ ହସ୍ତିନାର ମନ୍ତ୍ରୀପଦରେ ହିଁ ସଂତୁଷ୍ଟ ହୋଇ ରହିଗଲି ପିତା !

ଦ୍ୱୈପାୟନ: କାହିଁକି ବିଦୂର ? ତୋର ଧମନୀରେ ବିଶୁଦ୍ଧ ଅନାର୍ଯ୍ୟରକ୍ତ ପ୍ରବାହିତ ବୋଲି ? ତୁ କୃଷ୍ଣକାୟ ବୋଲି ଏ ଗୌରବର୍ଣ୍ଣ ଆର୍ଯ୍ୟମାନଙ୍କ କୂଳରେ ତୁ ଚିରକାଳ ଅନାଦୃତ । ସେମାନେ ଜାଣୁଛନ୍ତି ତତେ ହାତଛଡ଼ା କରିଦେଲେ ତୁ ବିପ୍ଳବ କରିବୁ... ହସ୍ତିନାର ବର୍ଣ୍ଣବିଦ୍ୱେଷ ପଦାରେ ପଡ଼ିଯିବ । ତୋର ଲୋକପ୍ରିୟତା ଅଛି । ଲୋକମାନଙ୍କୁ ରଂଜନ କରିବା ଶକ୍ତି ଅଛି । ତାକୁ ସେମାନେ ଅସ୍ତ୍ର ରୂପେ ବ୍ୟବହାର କରୁଛନ୍ତି... ଯଦି ପାଣ୍ଡୁ ତାର ସ୍ତ୍ରୀମାନଙ୍କୁ ନେଇ ଶତଶୃଙ୍ଗ ପର୍ବତରେ ବନବାସ କରିବ, ଏବଂ ଯଦି ଧୃତରାଷ୍ଟ୍ର ଅନ୍ଧ ବୋଲି ସିଂହାସନରେ ବସିବା ପାଇଁ ଅଯୋଗ୍ୟ, ତାହାହେଲେ ତୁ କାହିଁକି ସେ ସିଂହାସନରେ ବସିବୁ ନାହିଁ ?

ବିଦୂର: ତାହେଲେ ମତେ କଣ କରିବାକୁ ହେବ ଋଷିବର ?

ଦ୍ୱୈପାୟନ: କହୁଛି ପୁତ୍ର । ମୁଁ ଏଇଠିକି ଆସିବାର କାରଣ କଣ ବୋଲି ଭୀଷ୍ମ ପଚାରିଲାଣି । ମୁଁ ହସ୍ତିନା ରାଜପ୍ରାସାଦକୁ ଆଉ ଆସିବି ନାହିଁ । ରାଜବଂଶର ଅଭ୍ୟନ୍ତରରେ କଣ ସବୁ ଚାଲୁଛି ତା ଉପରେ ସଜାଗ ଦୃଷ୍ଟି ରଖିଥିବୁ ଆଉ ମତେ ସହଯୋଗ କରୁଥିବୁ । ତୁ ଆଉ ମୁଁ ଏକାଠି ହେଲେ ଅନେକ ଅସାଧ୍ୟ ସାଧନ ହୋଇପାରିବ । ସେଥିପାଇଁ ତୁ ମୋ ସାଙ୍ଗରେ ସହଯୋଗ କର । ଏତିକି ତୋ ପାଖରେ ଅନୁରୋଧ ।

ବିଦୂର: ପୁତ୍ର ପାଖରେ ପିତାର କୌଣସି ମିନତି କିମ୍ବା ଅନୁରୋଧ ନଥାଏ ଋଷିବର । ଥାଏ କେବଳ କର୍ତ୍ତବ୍ୟ ପାଳନ ପାଇଁ ଆଦେଶ । ପିତା । ଅବହେଳିତ ଗୋଷ୍ଠୀ ପାଇଁ ଆପଣଙ୍କର ମମତା ଅସୀମ । ମଣିଷର ମର୍ଯ୍ୟାଦା ନେଇ ସେମାନଙ୍କ ସମକକ୍ଷ ହୁଅନ୍ତୁ । ଏହା ହିଁ ଆପଣ ଚାହାନ୍ତି ।

ଦ୍ୱୈପାୟନ: ସେମିତି କହିଲେ ଏ କବି ହସ୍ତିନା ସଭ୍ୟତାରେ ଅନେକ ପରିବର୍ତ୍ତନ ଚାହେଁ । କିନ୍ତୁ ଭୀଷ୍ମ ଜଣେ ପ୍ରାଚୀନ ପନ୍ଥୀ । ସ୍ଥିତାବସ୍ଥାରେ କୌଣସି ପରିବର୍ତ୍ତନ ଚାହେଁ ନାହିଁ ।

ବିଦୁର: ପାଣ୍ଡୁ ଏବଂ କୁନ୍ତୀ ଭାଉଜଙ୍କୁ ଯେତେବେଳେ ଋଷ୍ୟଶୃଙ୍ଗ ପର୍ବତକୁ ସ୍ୱଇଚ୍ଛାରେ ବନବାସ କରିବାକୁ ପଠେଇ ଦିଆଗଲା ସେତେବେଳେ ପିତୃବ୍ୟ ଭୀଷ୍ମ ନିରବ ରହିଲେ ।

ଦ୍ୱୈପାୟନ: ଏହା ରାଜଶକ୍ତିର ଅପବ୍ୟବହାର ।

ବିଦୁର: ଅଥଚ ପ୍ରତିବାଦ କରିବା ଶକ୍ତି ଭ୍ରାତା ପାଣ୍ଡୁଙ୍କର ନାହିଁ । କେବଳ କୁନ୍ତୀ ଭାଉଜ ଏହାର ପ୍ରତିବାଦ କରିଛନ୍ତି ।

ଦ୍ୱୈପାୟନ: କୁନ୍ତୀକୁ ମୁଁ ପିଲାଟି ଦିନରୁ ଜାଣେ ବିଦୁର । ସେ ବିଦୁଷୀ ଏବଂ ରାଜନୀତିରେ ବିଚକ୍ଷଣା । ବିଚରୀକୁ ପ୍ରତାରଣା କରି ତାପାଇଁ ଗୋଟିଏ ସଉତୁଣୀର ବ୍ୟବସ୍ଥା କରିଛି ଭୀଷ୍ମ । ମୁଁ ଜାଣି ପାରୁନି ଶତଶୃଙ୍ଗ ପର୍ବତରେ ସେମାନେ କିପରି ଚଳିବେ ?

ବିଦୁର: ଶତଶୃଙ୍ଗ ପର୍ବତରେ ମୋର ଗୋଟିଏ ଆଶ୍ରମ ରହିଛି । ଭାବିଛି ସେଇଠି ରଖେଇ ଦେବି କୁନ୍ତୀ ଭାଉଜଙ୍କୁ ।

ଦ୍ୱୈପାୟନ: ବେଶ୍ । ସେୟାକର । କିନ୍ତୁ ମାଦ୍ରୀ ? ମାଦ୍ରୀ କୋଉଠି ରହିବ ?

ବିଦୁର: ମୋରି ଘରେ ।

ଦ୍ୱୈପାୟନ: ବେଶ୍ ସେୟା କର । ମୁଁ ସେଇଠି ତୁମମାନଙ୍କ ସହ ଦେଖା କରିବି ।

ବିଦୁର: ପ୍ରଣାମ ପିତା ! ଟିକିଏ ଅପେକ୍ଷା କରନ୍ତୁ । ମୁଁ ଆପଣଙ୍କ ପ୍ରସ୍ଥାନ ପାଇଁ ରଥର ବ୍ୟବସ୍ଥା କରୁଛି ।(ବିଦୁରଙ୍କ ପ୍ରସ୍ତାନ)

ଦ୍ୱୈପାୟନ: (ସ୍ୱଗତୋକ୍ତି କଲେ) ଏଇ ସେଇ ହସ୍ତିନାର ରାଜପ୍ରସାଦ । ଅନେକ ଦିନ ତଳେ ମାତା ସତ୍ୟବତୀ ମତେ ସ୍ମରଣ କରିଥିଲେ । ସ୍ମରଣ କରିଥିଲେ ଅମ୍ବା ଓ ଅମ୍ବାଲିକାଙ୍କ ଗର୍ଭରେ ଭ୍ରୂଣ ସଂଚର କରିବା ପାଇଁ ଏବଂ ମୁଁ ଆସିଥିଲି ଆର୍ଯ୍ୟମାନଙ୍କ ଗର୍ଭରୁ ଅନାର୍ଯ୍ୟ ଜାରଜ ସଂତାନ ସୃଷ୍ଟି କରିବା ପାଇଁ ଓଃ ! ସେ ଅମ୍ବାର କି ଘୃଣାଥିଲା ମୋ ପ୍ରତି !! ମୋ ଉପରକୁ ପଦାଘାତ କରିଥିଲା । ଘୃଣାରେ ଆଖିବୁଜି ଦେଇଥିଲା ବୋଲି ଧୃତରାଷ୍ଟ୍ର ଅନ୍ଧ ହେଲା । ସେଇଟାର ରକ୍ତରେ ଅମ୍ବା ଅଛି । ଅମ୍ବା ଆତ୍ମାର ସ୍ଫୁଲିଙ୍ଗରୁ ଧୃତରାଷ୍ଟ୍ର ଜନ୍ମ । ସେଇ ଅନ୍ଧଟାକୁ ଦେଖିଲେ ଆତ୍ମା ମୋର ଘୃଣା ଓ ଅପମାନରେ ନିଷ୍ଠୁର ହୋଇ ଉଠୁଛି । ସେଇଟା ଅତ୍ୟନ୍ତ ଦାମ୍ଭିକ, ଓ ଇର୍ଷାପରାୟଣ । ଆର୍ଯ୍ୟ ବୋଲି ତା ମନରେ ପ୍ରଚୁର ଗର୍ବ । କିନ୍ତୁ ମୁଁ ଆସିବି ଭୀଷ୍ମ । ଆସିବି ଧୃତରାଷ୍ଟ୍ର ! ବାରମ୍ବାର ଆସିବି ତମ ହସ୍ତିନାର ରାଜଶକ୍ତିର ବଳୟ ଭିତରକୁ । ତମେ ସବୁ ବିଦେଶରୁ

ଆସିଥିବା ଆର୍ଯ୍ୟମାନଙ୍କ ହାତରୁ ରାଜନୈତିକ କ୍ଷମତା କାଢ଼ି ନିଆଯିବ । ଦରକାର ପଡ଼ିଲେ ରାଜନୈତିକ କ୍ଷମତା ପାଇଁ ଗୋଟାଏ ବଡ଼ ଯୁଦ୍ଧ ମଧ୍ୟ ହୋଇପାରେ । ତୁ କିଏ ଧୃତରାଷ୍ଟ୍ର ? ପାଣ୍ଡୁ ଓ କୁନ୍ତୀଙ୍କୁ କାହିଁକି ବନବାସରେ ପଠେଇଲୁ ? ଦୋଷ କଣ ପାଣ୍ଡୁର ? ଦୋଷକଣ କୁନ୍ତୀ ଆଉ ମାଦ୍ରୀର ? ସେମାନେ କାହିଁକି ଋଷ୍ୟଶୃଙ୍ଗ ଅରଣ୍ୟରେ ବାସ କରିବେ ? ଏ କବି କୃଷ୍ଣ ଦ୍ୱୈପାୟନ ଗୋଟାଏ ବିପର୍ଯ୍ୟସ୍ତ କାଳର ଇତିହାସକୁ କେଉଁ ଭାଷାରେ ଲେଖିବ ? ଏଥିପାଇଁ ମତେ ପୁତ୍ର ପାଣ୍ଡୁ ପାଖକୁ ଯିବାକୁ ହେବ ବାରମ୍ବାର ।

*(ମଂଚ ଅନ୍ଧାର ହେଲା)*

# ଦୃଶ୍ୟ-୨୦

*(ଋଷ୍ୟପର୍ବତ । ମହାରାଜା ପାଣ୍ଡୁଙ୍କ ବନଯାଗ ଜୀବନରେ କୌଣସି ଏକ ଦିନ । ଶୁଭୁଛି ପକ୍ଷୀଙ୍କର କାକଳୀ ।)*

ପାଣ୍ଡୁ: ଏଇ ସେଇ ଋଷ୍ୟଶୃଙ୍ଗ ଗିରି । ଚତୁର୍ଦ୍ଦିଗେ ପକ୍ଷୀଙ୍କ କାକଳୀ । କୋଉ ଗହନ ବୃକ୍ଷର ଅନ୍ତରାଳୁ ଡ଼ାକ ଦିଏ ଫାଲଗୁନର କୁହୁକ ପକ୍ଷୀ । ମୁଁ ପାଣ୍ଡୁ । ମୁଁ ଗୋଟେ ମୋହଗ୍ରସ୍ତ ଧବଳ ଅଶ୍ୱ... ସୃଜି ହୋଇଥାଏ ଯେତେ ମୋହନ କେଦାର, ଚରୁଥାଏ ମୁଁ କାଳ କାଳ । ଏଇଠି ମୁଁ ଦିନସାରା ଆକାଶ, ବୃକ୍ଷ ପାହାଡ଼ ଓ ଶୂନ୍ୟକୁ ଋହିଁ ରହିଥାଏ । ରାତିସାରା ହରିଦ୍ରାବର୍ଣ୍ଣର ଜଳରେ ସନ୍ତରଣର ସ୍ୱପ୍ନ ଦେଖେ; ପ୍ରାଗ ଐତିହାସିକ ଜନ୍ତୁ ଓ ମଣିଷଙ୍କୁ କୁଣ୍ଢେଇ ଧରେ । ମାଲ୍ୟାଣୀ ମାନଙ୍କର ଫୁଲ ତୋଳା ଦୃଶ୍ୟ ଦେଖେ, ନଚେତ୍ ଉଜ୍ଜଳ ସର୍ପ ନିକଟରେ ସନ୍ୟାସୀଙ୍କୁ ଦେଖେ । (ଆବହ ସଂଗୀତରେ ବଂଶୀ) ବନସ୍ତକୁ ମୁଁ ଆସିଛି ବହୁବାର ଆଦ୍ୟ ଯୌବନରେ । ମୃଗୟା କରିଛି ଘୋର ବନସ୍ତ ମଝିରେ । ସେଦିନ ବି ଆସିଥିଲି ଯେଉଁଦିନ ଋଷି କିଂନ୍ଦମ ରତିକ୍ରିୟା କରୁଥିଲେ ମୃଗୀଣୀ ସଂଗତେ । ମୁଁ ମୋ ଆଜ୍ଞାତରେ ମୃଗୀଣୀ ମନେକରି ତାକୁ ଶରବିଦ୍ଧ କଲି ଏବଂ ଦେଖିଲି ଋଷିଟିଏ ରୂପ ବଦଳାଇ ତାଙ୍କ ପତ୍ନୀଙ୍କୁ କୋଳରେ ଧରି ଶୃଙ୍ଗାର ଚର୍ଯ୍ୟା କରିବା ଅବସ୍ଥାରେ ଅଛନ୍ତି । ମୁଁ ଜାଣିପାରିଲିନାହିଁ ।

*(ହଠାତ୍ ମଂଚ ଅଂଧକାର ହେଲା ଏବଂ ଦେଖାଗଲା ଋଷି କିଂଦମ ତାଙ୍କ ପତ୍ନୀଙ୍କୁ କୋଳରେ ଧରିଥିବା ସମୟରେ ଦୁଇଜଣଙ୍କ ଛାତିରେ ବିଦ୍ଧ ହୋଇଛି ଶର । ଋଷି କିଂଦମ ଓ ତାଙ୍କ ପତ୍ନୀ ଚିତ୍କାର କରୁଛନ୍ତି । ପ୍ରବେଶ କଲେ ପାଣ୍ଡୁ । ହାତରେ ଧନୁଶର ।)*

ପାଣ୍ଡୁ: ମତେ କ୍ଷମା କରନ୍ତୁ ଋଷିବର ! ମୁଁ ଆପଣଙ୍କୁ ମାରିବା ପାଇଁ ଶର ନିକ୍ଷେପ କରିନଥିଲି । ଗୋଟିଏ ବ୍ୟାଘ୍ରର ଗର୍ଜନ ଶୁଣି ଶବ୍ଦଭେଦୀବାଣ ନିକ୍ଷେପ କରିଥିଲି ।

କିଂଦମ: ତୁମେ ସୀମା ଲଂଘନ କରିଛ ରାଜନ୍ ! ଶବ୍ଦ ଭେଦୀ ବାଣ ମୋ ପାଖକୁ ଆସିଲା କିପରି ?ତୁମେ ଯିଏ ହୁଅନା କାହିଁକି,ଏହା ତୁମର ଯେଉଁ ବାଣ ହେଉନା କାହିଁକ, ମୁଁ ତୁମକୁ ଅଭିଶାପ ଦେଉଛି । ତୁମେ ଯଦି ତୁମ ପତ୍ନୀଙ୍କ

ସହ ସହବାସ କରିବ, ତତକ୍ଷଣାତ୍ ତୁମର ମୃତ୍ୟୁ ହେବ । *(ହଠାତ୍ ଆକାଶରେ ବିଜୁଳି ଓ ବଜ୍ରପାତରେ ଶବ୍ଦ । ମଂଚ ଅଂଧକାର ହେବ । ଆଲୋକ ଆସିଲା ବେଳକୁ ଚିନ୍ତାଗ୍ରସ୍ତ ହୋଇ ବସିଛନ୍ତି ନିର୍ବାସିତ ରାଜା ପାଣ୍ଡୁ । ପ୍ରବେଶ କଲେ କୁନ୍ତୀ ଓ ମାଦ୍ରୀ)*

କୁନ୍ତୀ: ଆର୍ଯ୍ୟ ! ଆପଣ କଣ ଏଇଠି ବସିଛନ୍ତି ? ଆମେ ଋଷ୍ୟଶୃଙ୍ଗ ବନସ୍ତ ସାରା ଆପଣଙ୍କୁ ଖୋଜି ସାରିଲୁଣି । ଆପଣଙ୍କ ମଣୋହି ପାଇଁ ଖାଦ୍ୟ ବ୍ୟଞ୍ଜନ ବଢ଼ା ହୋଇଥିଲା । ଶୀତଳ ହୋଇ ଯିବଣି । କଣ ହୋଇଛି ଆର୍ଯ୍ୟ ? ଆପଣ ଚିନ୍ତାଗ୍ରସ୍ତ ଜଣା ପଡୁଛନ୍ତି । ହୋଇଛି କଣ ?

ପାଣ୍ଡୁ: ଅନର୍ଥ ହୋଇଗଲା କୁନ୍ତୀ । ମୋର ନିକ୍ଷିପ୍ତ ଶରରେ ଋଷି କିଂଦମ ଓ ତାଙ୍କ ପତ୍ନୀଙ୍କର ମୃତ୍ୟୁ ହୋଇଗଲା ।

ମାଦ୍ରୀ: କେମିତି ? ଆପଣତ ଅବିବେକୀ ନୁହନ୍ତି । ଆପଣ ନିଶ୍ଚୟ ମାରିନାହାନ୍ତି ଋଷି କିଂଦମ୍‌ଙ୍କୁ । ସିଏ ତ ଆମ ଦୁଇ ଭଉଣୀଙ୍କୁ ପୁତ୍ରବତୀ ହୁଅ ବୋଲି ଆର୍ଶିବାଦ କରିଥିଲେ ।

କୁନ୍ତୀ: ଆପଣ କାହିଁକି ମାରିବେ ? ହୋଇପାରେ ଏହା ଏକ ଦୁର୍ଘଟଣା ।

ପାଣ୍ଡୁ: ଋଷି ମତେ ଅଭିଶାପ ଦେଲେ । ପତ୍ନୀ ମାନଙ୍କ ସହ ସହବାସ କଲେ ମୋର ମୃତ୍ୟୁ ହେବ ।

କୁନ୍ତୀ: ମୁଁ ତାହେଲେ ମା ହେବି କେମିତି ?

ମାଦ୍ରୀ: ମତେବି ତ ଆଶିର୍ବାଦ କରିଛନ୍ତି- "ପୁତ୍ରବତୀ ଭବ" ବୋଲି । ବିନା ସହବାସରେ ପୁତ୍ର ହେବ କିପରି" ?

ପାଣ୍ଡୁ: ସେଇଥିପାଇଁ ମୁଁ ଚିନ୍ତିତ କୁନ୍ତୀ । ମୋ ବଂଶ ରକ୍ଷା ହେବ କେମିତି ? ଆଶିର୍ବାଦ ଆଉ ଅଭିଶାପ ମଧ୍ୟରେ ଥିବା ଏ ରହସ୍ୟ କଣ ମୁଁ ଜାଣିପାରୁନାହିଁ । ଜାଣିପାରୁନାହିଁ ବଂଶରକ୍ଷା ହେବ କେମିତି ? ମୋ ପାଖରେ ବର୍ତ୍ତମାନ କୌଣସି ଉପାୟ ନାହିଁ ।

କୁନ୍ତୀ: (କିଛି ସମୟ ଚିନ୍ତା କରି) ଅଛି ଆର୍ଯ୍ୟା ! ଗୋଟିଏ ଉପାୟ ଅଛି । ମୁଁ ଯେତେବେଳେ କୁମାରୀ ଥିଲି ମହର୍ଷି ଦୁର୍ବାସା ମତେ ଗୋଟିଏ ମଂତ୍ର ଦୀକ୍ଷା ଦେଇଥିଲେ । ସେ ମଂତ୍ର ବଳରେ ସ୍ୱର୍ଗର ଯେକୌଣସି ଦେବତାଙ୍କୁ ମୁଁ ଆହ୍ୱାନ କଲେ ସେ ଆସିବେ ଓ ମତେ ପୁତ୍ରଦାନ କରିବେ । ଅବଶ୍ୟ ଏଥିପାଇଁ ଆପଣଙ୍କର ଅନୁମତି ଆବଶ୍ୟକ ।

ପାଣ୍ଡୁ: ମତେ ଆଗରୁ କାହିଁକି ଏ କଥା କହିନଥିଲ କୁନ୍ତୀ? ମୁଁ ବର୍ତ୍ତମାନ ସଂଗେ ସଂଗେ ଅନୁମତି ଦେଉଛି ।

କୁନ୍ତୀ: କେଉଁ ଦେବତାଙ୍କୁ ଆବାହନ କରିବି? ଆମର ହିନ୍ଦୁଧର୍ମରେ ତ ତେତିଶ କୋଟି ଦେବତା ।

ପାଣ୍ଡୁ: ଅଗ୍ନି ଆମର ଦରକାରି ଦେବତା ନୁହନ୍ତି । ବରୁଣଙ୍କୁ ଡ଼ାକି ଜ୍ୟେଷ୍ଠପୁତ୍ରକୁ ଜନ୍ମ ଦେବା ଶୁଭଙ୍କର ନୁହେଁ । ତେଣୁ ମୁଁ ଭାବୁଛି ପ୍ରଥମେ ଧର୍ମରାଜ ଯମଙ୍କୁ ଡ଼ାକିବା । ସିଏ ଧର୍ମ ଦେବତା । ଆତ୍ମାମାନଙ୍କୁ ସେମାନଙ୍କର କର୍ମ ଅନୁଯାୟୀ ସ୍ୱର୍ଗ କିମ୍ବା ନର୍କକୁ ପଠାନ୍ତି । ଆହ୍ୱାନ କର ସେଇ ଧର୍ମ ଦେବତାଙ୍କୁ ।

କୁନ୍ତୀ: ଠିକ୍ ଅଛି । (ଆବହ ସଂଗୀତ, କୁନ୍ତୀ ଧ୍ୟାନ ମଗ୍ନ ହେଲେ । ଧର୍ମରାଜ ଉପସ୍ଥିତ ଥିଲେ । ସାମ୍ନାରେ ଆଲୋକର ଭୟଙ୍କର ସ୍ଫୁରଣ ଘଟିଲା । ଆବହ ସଂଗୀତରେ ତତକ୍ଷଣାତ୍ ଗୋଟିଏ ଶିଶୁପୁତ୍ରର କଂନ୍ଦ୍ରନ ଶୁଭିଲା । କୁନ୍ତୀଙ୍କ କୋଳରେ ସେ ଶିଶୁପୁତ୍ରଟି ଦୃଶ୍ୟମାନ ହେଲା । କୁନ୍ତୀ ପୁତ୍ର ଟିକୁ ଦେଲେ ପାଣ୍ଡୁଙ୍କୁ । ଅଦୃଶ୍ୟ ହୋଇଯାଇଥିବା ଧର୍ମରାଜାଙ୍କ ସ୍ୱର ପ୍ରତିଧ୍ୱନିତ ହେଲା ।

ଧର୍ମରାଜାଙ୍କ ସ୍ୱର: କୁନ୍ତୀ! ଏ ପୁତ୍ର ତୁମ୍ଭର ସର୍ବଦା ଧର୍ମ ଓ ନ୍ୟାୟର ପଥରେ ଚାଲିବ । ଯୁଦ୍ଧ କ୍ଷେତ୍ରରେ ସର୍ବଦା ସ୍ଥିର ହୋଇ ରହିବାର କ୍ଷମତା ବହନ କରିବ । ତେଣୁ ଏହି ପୁତ୍ରର ନାମ ରଖିବ ଯୁଧିଷ୍ଠିର ।

*(ମଂଚ ଅଂଧାର ହେଲା)*

# ଦୃଶ୍ୟ-୨୧

*ହସ୍ତିନା ସିଂହାସନରେ ଧୃତରାଷ୍ଟ୍ର । ପାଖରେ ମହାରାଣୀ ଗାନ୍ଧାରୀ । ପ୍ରବେଶ କଲେ ବିଦୂର ।*

ବିଦୂର: ପ୍ରଣାମ ମହାରାଜ ! ଶୁଭ ଖବର ନେଇ ଆସିଛି ।

ଧୃତରାଷ୍ଟ୍ର: କୋଉ ଖବର ବିଦୂର ?

ବିଦୂର: ଋଷ୍ୟଶୃଙ୍ଗ ପର୍ବତରେ ଭ୍ରାତା ପାଣ୍ଡୁଙ୍କର ଗୋଟିଏ ପୁତ୍ର ସଂତାନ ଜାତ ହୋଇଅଛି ।

ଗାନ୍ଧାରୀ: ଏହା କିପରି ସଂଭବ ହେଲା ବିଦୂର ? ମୁଁ ପ୍ରଥମେ ଗର୍ଭ ଧାରଣ କଲି । ଅଥଚ ହସ୍ତିନାପୁରର ଜ୍ୟେଷ୍ଠପୁତ୍ରକୁ କୁନ୍ତୀ ଜନ୍ମ ଦେଲା ?

ବିଦୂର: କିନ୍ତୁ କୁନ୍ତୀ ଭାଉଜ ଗୋଟିଏ ପୁତ୍ର ସଂତାନକୁ ଜନ୍ମ ଦେଇଛନ୍ତି ଏବଂ ତାର ନାମ ଯୁଧିଷ୍ଠିର । ଏକଥା ହସ୍ତିନାର ପ୍ରଜାମାନେ ଜାଣି ସାରିଲେଣି ।

ଗାନ୍ଧାରୀ: କାହିଁକି ଏମିତି ହେଲା ଆର୍ଯ୍ୟ ? ଏ ଭ୍ରୂଣକୁ ମୁଁ ଦଶମାସ ଗର୍ଭରେ ଧାରଣ କରିସାରିଲିଣି । ଇଏ କାହିଁକି ଚୁପଚାପ ଗର୍ଭଭିତରେ ଶୋଇଛି ? କାହିଁକି ? କାହିଁକି ? କାହିଁକି ?

*(ଏହା କହି ଈର୍ଷା ଓ ରାଗରେ ଗାନ୍ଧାରୀ ନିଜ ପେଟ ଉପରେ ନିଜେ ଆଘାତ ଦେଲେ ଓ ଅସହ୍ୟ ଗର୍ଭ ଯନ୍ତ୍ରଣାରେ ଛଟପଟ ହେଲେ । ବିଦୂର ଏବଂ ଦ୍ୱାରପାଳ ମାନେ ମିଶି ତାଙ୍କୁ ଭିତରକୁ ନେଇଗଲେ ଓ କିଛି ସମୟ ପରେ ଅନ୍ତରାଳରୁ ଗୋଟିଏ ନବଜାତ ଶିଶୁର କ୍ରଂଦନ ଶୁଭିଲା ।)*

ଧୃତରାଷ୍ଟ୍ର: (ବ୍ୟସ୍ତ ହୋଇ ପଡ଼ିଲେ) କଣ ହେଲା ଭିତରେ ? ଭ୍ରାତା ବିଦୂର ! (ବିଦୂର ପ୍ରବେଶ କରି)

ବିଦୂର: ଗାନ୍ଧାରୀ ଭାଉଜଙ୍କର ଗର୍ଭପାତ ହୋଇ ଗୋଟିଏ ପୁତ୍ର ସଂତାନ ଜନ୍ମ ହୋଇଥିଲା ମହାରାଜ ! ରାଜବୈଦ୍ୟ ଗାନ୍ଧାରୀ ଭାଉଜଙ୍କ ପାଖରେ ଅଛନ୍ତି । କିନ୍ତୁ...

ଧୃତରାଷ୍ଟ୍ର: କିନ୍ତୁ କଣ ?

ବିଦୂର: ରାଜ ଜ୍ୟୋତିଷ ଗଣନା କରି ଦେଖି କହିଲେ ଏ ସଂତାନ ବଡ଼ ହେଲେ କୁରୁବଂଶର ସର୍ବନାଶ କରିବ । ସେ ହେବ ଜଣେ ଅପ୍ରତିହତ ଯୋଦ୍ଧା ଏବଂ କୁରୁବଂଶର ଏକଛତ୍ରବାଦୀ ମହାରାଜା । ସମଗ୍ର ଆର୍ଯ୍ୟାବର୍ତ୍ତରେ ତାର

ପ୍ରତିପତ୍ତି ରହିବ ଏବଂ ସେ ପ୍ରଚଣ୍ଡ ରାଜନୈତିକ କ୍ଷମତାର ଅଧିକାରୀ ହେବେ । ତାଙ୍କ ନାମ ରହିଲା ଦୁର୍ଯ୍ୟୋଧନ ।

*(ରାଜପ୍ରାସାଦ ବାହାରେ ପ୍ରଜାମାନେ ଚିତ୍କାର କରୁଥିବା ଅସ୍ପଷ୍ଟ ସ୍ୱରରେ ଶୁଭିବ)*

ଧୃତରାଷ୍ଟ୍ର: ବାହାରେ ପ୍ରଜାମାନେ କଣ ମେଳି ହୋଇଛନ୍ତି ?

ବିଦୁର: ମହାରାଜା ଧୃତରାଷ୍ଟ୍ରଙ୍କର ପୁତ୍ର ସଂତାନ ଲାଭ ହୋଇଛି ଏବଂ ତା ଦ୍ୱାରା କୁରୁବଂଶ ନିପାତ ହେବ । ଏ ଖବର ହସ୍ତିନାରେ ରାଷ୍ଟ୍ର ହୋଇଗଲାଣି । ପ୍ରଜାମାନେ ସେଥିପାଇଁ ଚିତ୍କାର କରୁଛନ୍ତି ।

ଧୃତରାଷ୍ଟ୍ର: ରାଜ ଜ୍ୟୋତିଷଙ୍କୁ କୁହ - ଶୀଘ୍ର ଏ ପୁତ୍ରର ରିଷ୍ଟ ଖଣ୍ଡନ ପାଇଁ ଯଜ୍ଞ ଓ ପୂଜାର ବ୍ୟବସ୍ଥା କରିବେ ।

ବିଦୁର: ଏଇତ ମହାରାଣୀ ନବଜାତକୁ ନେଇ ଆସୁଛନ୍ତି ମହାରାଜ । (ସଦ୍ୟଜାତ ଶିଶୁକୁ ନେଇ ପ୍ରବେଶ କଲେ ଗାନ୍ଧାରୀ)

ଗାନ୍ଧାରୀ: (ଧୃତରାଷ୍ଟ୍ରଙ୍କୁ) ଏଇ ନିଅନ୍ତୁ ଆର୍ଯ୍ୟ ! ଇଏ ତମର ଜ୍ୟେଷ୍ଠ ପୁତ୍ର ! (ବଢ଼ାଇଦେଲେ)

ଧୃତରାଷ୍ଟ୍ର: (ଅତି ସଂତର୍ପଣରେ ନବଜାତକଟିକୁ ଧରିଲେ ଗର୍ବର ସହିତ) ଠିକ୍ କହିଚ ଗାନ୍ଧାରୀ ! ଇଏ ଆମର ଜ୍ୟେଷ୍ଠପୁତ୍ର ! (ହସିଲେ) (ପ୍ରବେଶ କଲେ ଶକୁନି)

ଶକୁନି: ବଧାଇ ! ବଧାଇ ଆପଣଙ୍କୁ ହସ୍ତିନା ସମ୍ରାଟ ! ଆପଣ ଆଜିଠାରୁ ପିତୃତ୍ୱ ଲାଭ କଲେ !

ଧୃତରାଷ୍ଟ୍ର: କିନ୍ତୁ ମୋର ଦୁଃଖ ସେ ହସ୍ତିନାର ଜ୍ୟେଷ୍ଠ ପୁତ୍ର ହେଲା ନାହିଁ ।

ଗାନ୍ଧାରୀ: ସେଥିପାଇଁ ଆପଣ ଦୁଃଖ କାହିଁକି କରୁଛନ୍ତି ଆର୍ଯ୍ୟପୁତ୍ର ? ଆପଣ ଜୀବନରେ ପ୍ରଥମଥର ପାଇଁ ପିତା ହୋଇଛନ୍ତି । ଖୁସି ହୁଅନ୍ତୁ । ରାଜପ୍ରାସାଦରେ ଉତ୍ସବ ପାଳନ କରନ୍ତୁ ।

ବିଦୁର: ମତେ ଆଜ୍ଞା ଦିଅନ୍ତୁ ମହାରାଜ ! ମୁଁ ରିଷ୍ଟଖଣ୍ଡନ ଯଜ୍ଞ ପାଇଁ ଆୟୋଜନ କରିବି । (ପ୍ରସ୍ଥାନ କଲେ)

ଶକୁନି: ହସ୍ତିନାପୁରର ଜ୍ୟେଷ୍ଠ ପୁତ୍ର ହେଲା ନାହିଁ ବୋଲି ମନ ଦୁଃଖ କରୁଛନ୍ତି ମହାରାଜ ? ଆପଣଙ୍କ ଶିରରେ ହସ୍ତିନାର ରାଜମୁକୁଟ ଯେପରି ଶୋଭାପାଉଛି, ଏଇ ନବଜାତକ ବଡ଼ହେଲେ ସେହିପରି ତା ଶିରରେ ମଧ୍ୟ ରାଜମୁକୁଟ ଶୋଭାପାଇବ (ହସିଲେ)

ଧୃତରାଷ୍ଟ୍ର: ତା' କିପରି ସଂଭବ ହେବ ଗାନ୍ଧାର କୁମାର ? ଋଷ୍ୟ ଶୃଙ୍ଗ ପର୍ବତରେ ପାଣ୍ଡୁପୁତ୍ର ଯୁଧିଷ୍ଠିର ଯାଠୁ ବଡ଼ ବୋଲି ହସ୍ତିନାର ପ୍ରଜାମାନେ ଜାଣି ସାରିଲେଣି ।

ଗାନ୍ଧାରୀ: ଯୁଧିଷ୍ଠିର ସାଙ୍ଗରେ ଦୁର୍ଯ୍ୟୋଧନକୁ କାହିଁକି ତୁଳନା କରୁଛନ୍ତି ଆର୍ଯ୍ୟପୁତ୍ର ? ମୁଁ ଜାଣିଛି ତୁଳନା ହିଁ ଦୁଃଖର କାରଣ ।

ଧୃତରାଷ୍ଟ୍ର: ଗାନ୍ଧାରୀ ! ଏ ପୁତ୍ର ମତେ ଦେଖିପାରୁଛି ?

ଗାନ୍ଧାରୀ: ଦେଖି ପାରୁଛି ଆର୍ଯ୍ୟ !

ଧୃତରାଷ୍ଟ୍ର: ଚିହ୍ନିପାରୁଛି ମୁଁ ତାର ପିତାବୋଲି ? ଠିକ୍ ମୋ ପୁଅ ଭଳି ଦିଶୁଛି ଗାନ୍ଧାରୀ ? ଜାଣି ପାରୁଛି ମୁଁ ଅନ୍ଧବୋଲି

ଗାନ୍ଧାରୀ: ମୁଁ କେମିତି ଜାଣିବି ଆର୍ଯ୍ୟ ? ଆପଣ ଯେମିତି ଦେଖିପାରୁନାହାନ୍ତି ମୁଁ ମଧ ସେପରି ଦେଖି ପାରୁନାହିଁ । ଆଖିରେ ପଟିବାନ୍ଧି କେବଳ ସ୍ପର୍ଶରେ ଅନୁଭବ କରୁଛି ମୋ ପୁତ୍ରକୁ ।

ଶକୁନି: ଏ ପୁତ୍ର ଆପଣଙ୍କ ଠାରୁ ଅଧିକ ଶକ୍ତ ହେବ ମହାରାଜ ! ଯୁଦ୍ଧ ଭୂମିରେ ଇଏ ହବ ଶତ୍ରୁମାନଙ୍କ ପାଇଁ ଏକ ବିରାଟ ସଂକଟ । ଗାନ୍ଧାରୀ ! ଏଇ ପୁତ୍ରର ଉଜ୍ଜଳ ଭବିଷ୍ୟତ ପାଇଁ ଯଜ୍ଞ ଆୟୋଜନ କରାଯିବ । ଚାଲ ସେଥିରେ ଆମେ ଯୋଗ ଦେବା । ଆପଣ ଯିବେ ନାହିଁ ମହାରାଜ ?

ଧୃତରାଷ୍ଟ୍ର: ଯିବି । କିନ୍ତୁ ହସ୍ତିନାର ପ୍ରଜାମାନେ କହୁଛନ୍ତି ଏ ପୁତ୍ର ଗୋଟାଏ ଦୁରାତ୍ମା ଓ ପାପୀ । ଘୋର କଳି । ତେଣୁ ଏହାର ଜନ୍ମ ସମୟରେ ପ୍ରକୃତିରେ ଘୋର ଉତ୍ପାତ ହୋଇଥିଲା । ଚୈତ୍ରର ନୀଳ ଆକାଶ ହଠାତ୍ କଳା ଘୁମର ହୋଇଯାଇଥିଲା । ପଶୁମାନେ ଅସହାୟ ହୋଇ ଗୁମୁରି ଗୁମୁରି କାନ୍ଦିଥିଲେ । ଆକାଶ ଗର୍ଜି ଉଠିଲା । ବଜ୍ରପାତ ହେଲା । ତୁମେ ଏ ସବୁରେ ବିଶ୍ୱାସକର ଗାନ୍ଧାରୀ ?

ଗାନ୍ଧାରୀ: ମୁଁ ତ ପ୍ରସୂତି ଭବନରେ ଥିଲି । ମୁଁ କେମିତି ଜାଣିବି ଏସବୁ ବ୍ୟୁତ୍ପାତ ଘଟିଛି କି ନାହିଁ ! କ୍ଷଣିକ ପାଇଁ ମୁଁ ମୋର ଅନ୍ଧପୁଟୁଳି ଖୋଲି ନିଷ୍ପାପ ପୁତ୍ରକୁ ମୋର ଥରେ ଦେଖିଛି ମାତ୍ର ।

ଧୃତରାଷ୍ଟ୍ର: ପୃଥିବୀର ସବୁପୁତ୍ର ନିଷ୍ପାପ ଗାନ୍ଧାରୀ । ଯେଉଁ ଶିଶୁର ଆତ୍ମପର ଜ୍ଞାନ ବୋଲି କିଛି ନାହିଁ, କ୍ଷୁଧା ତୃଷ୍ଣାକୁ ଛାଡ଼ିଦେଲେ ଯିଏ ଆଉ କିଛି ଜାଣେନା ସେ କେବେ ଦୁରାତ୍ମା ଓ ପାପୀ ହୋଇ ପାରିବନି । ମୁଁ ଯାହା ଭାବୁଛି, ହସ୍ତିନାପୁର ସିଂହାସନ ଉପରେ ପାଣ୍ଡୁପୁତ୍ର ଯୁଧିଷ୍ଠିରର ଦାବୀକୁ ବଳବତ୍ତର ରଖିବା ପାଇଁ

ଦୁଷ୍ଟ ମାନେ ଏପରି କୁଚକ୍ରାନ୍ତ କରୁଛନ୍ତି । ମୁଁ ସେମାନଙ୍କୁ ଶାସ୍ତିଦେବି । ଜିଭ କାଟି ଦେବି । ପ୍ରତ୍ୟେକଙ୍କୁ ଜଣାଇ ଦେବି ଧୃତରାଷ୍ଟ୍ରର ସିଂହାସନର ଉତ୍ତରାଧିକାରୀ କେବଳ ଏକମାତ୍ର ଦୁର୍ଯ୍ୟୋଧନ । ତା କପାଳରେ ଜନ୍ମରୁ ରାଜଟୀକା ରହିଛି ବୋଲି ଜ୍ୟୋତିଷ କହିଲେ । ଇଏ ହିଁ ମୋର ଏକମାତ୍ର ଉତ୍ତରାଧିକାରୀ ।

*(ଧୃତରାଷ୍ଟ୍ର ଗାନ୍ଧାରୀଙ୍କ କୋଳରୁ ପୁତ୍ରକୁ ନେଇ ଭିତରକୁ ଗଲେ । ପଛେ ପଛେ ଶକୁନି ଓ ଗାନ୍ଧାରୀ ।)*

# ଦୃଶ୍ୟ-୨୨

*ଋଷ୍ୟଶୃଙ୍ଗ ପର୍ବତରେ ପାଣ୍ଡୁଙ୍କ ଆଶ୍ରମ । ପ୍ରବେଶ କଲେ କୁନ୍ତୀ, ମାଦ୍ରୀ ଓ ପାଣ୍ଡୁ ।*

ପାଣ୍ଡୁ: କୁନ୍ତୀ! ନିଯୋଗ ପ୍ରଥା ଅନୁଯାୟୀ ଏଇଥର ଆମେ ବାୟୁ ଦେବତାଙ୍କୁ ଆବାହନ କରିବା । ତାଙ୍କ ଔରସରୁ ଆମର ଗୋଟିଏ ବଳଶାଳୀ ପୁତ୍ର ଆବଶ୍ୟକ । ବର୍ତ୍ତମାନ ତୁମେ ଏଇଠି ଧ୍ୟାନରେ ବସି ଋଷି ଦୁର୍ବାସାଙ୍କ ମଂତ୍ର ପାଠ କର ।

କୁନ୍ତୀ: ମାଦ୍ରୀ ! ତୁ' ଆର୍ଯ୍ୟପୁତ୍ରଙ୍କ ପାଖରେ ବସ । ମୁଁ ଧ୍ୟାନରେ ବସୁଛି । *(କୁନ୍ତୀ ଧ୍ୟାନରେ ମଗ୍ନ ହେଲେ । ମଂଚ ଉପରେ ପ୍ରବଳ ବେଗରେ ଘୂର୍ଣ୍ଣି ଝଡ଼ ହେଲା । ବାୟୁ ଦେବତା ଆବିର୍ଭୂତ ହୋଇ ବର ପ୍ରଦାନ କଲେ । କୁନ୍ତୀଙ୍କ କୋଳରେ ଶିଶୁଟିଏ ଦେଇ ଅନ୍ତର୍ଦ୍ଧାନ ହେଲେ । କୁନ୍ତୀ ଶିଶୁଟିକୁ ଆଣି ପାଣ୍ଡୁଙ୍କୁ ଦେଲେ । ପାଣ୍ଡୁ ତାକୁ ଧରୁ ଧରୁ ଶିଶୁଟି ହାତରୁ ଖସି ଯାଇ ପଥର ଚଟାଣରେ ପଡ଼ିଲା । କୁନ୍ତୀ ବ୍ୟସ୍ତ ହୋଇ ଶିଶୁଟିକୁ ପରୀକ୍ଷା କଲେ । ତାର କିଛି କ୍ଷୟ ହୋଇନଥିଲା । ଏତିକି ବେଳେ ବାୟୁଦେବତାଙ୍କ ସ୍ୱର ଆକାଶରୁ ପ୍ରତିଧ୍ୱନିତ ହେଲା । (ପୁତ୍ରଟିକୁ ଧରି କୁନ୍ତୀ କାନ୍ଦି କାନ୍ଦି ଗେଲ କରୁଥିଲେ ।)*

ବାୟୁଙ୍କ ସ୍ୱର: ଭୟର କାରଣ ନାହିଁ କୁନ୍ତୀ । ଏ ପୁତ୍ରର ଶରୀର ପ୍ରସ୍ତର ପ୍ରାୟ କଠିନ ହେବ । ଦେହରେ ତାର ରହିବ ବଜ୍ର ପରିଶକ୍ତି । ଏ ପୁତ୍ର ଯୁଦ୍ଧ କ୍ଷେତ୍ରରେ ଶତ୍ରୁମାନଙ୍କ ମନରେ ଆତଙ୍କ ସୃଷ୍ଟି କରିବ । ଭୀମ ନାମରେ ଏହି ପୁତ୍ର ଆର୍ଯ୍ୟାବର୍ତ୍ତରେ ଖ୍ୟାତ ହେବ । *(ବାୟୁ ଦେବତା ଅନ୍ତର୍ଦ୍ଧାନ ହେଲେ । ଆଲୋକ କେନ୍ଦ୍ରିଭୂତ ହେଲା । ନବଜାତକ ଉପରେ । ଅନ୍ଧକାର ।)*

# ଦୃଶ୍ୟ-୨୩

*ସିଂହାସନ ଉପରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ । ପ୍ରବେଶ କଲେ ଭୀଷ୍ମ ।*

ଧୃତରାଷ୍ଟ୍ର: ପ୍ରଣାମ ପିତୃବ୍ୟ ।

ଭୀଷ୍ମ: ଶ୍ରବଣେନ୍ଦ୍ରିୟ ଦ୍ୱାରା ତୁମେ ଖୁବ୍ ସୁନ୍ଦର ଦେଖିପାରୁଛ ପୁତ୍ର । ଆୟୁଷ୍ମାନ ଭବ ।

ଗାନ୍ଧାରୀ: ପ୍ରଣାମ ପିତୃବ୍ୟ ! (ମୁଣ୍ଡିଆ ମାରିଲେ)

ଭୀଷ୍ମ: ସୌଭାଗ୍ୟବତୀ ଭବ ।

ଧୃତରାଷ୍ଟ୍ର: ମୋ ପାଖକୁ ଆସିବାର କାରଣ କଣ ପିତୃବ୍ୟ ?

ଭୀଷ୍ମ: ମୁଁ ବର୍ତ୍ତମାନ ମାତା ସତ୍ୟବତୀଙ୍କ ଦୂତ ରୂପେ ଏଠାକୁ ଆସିଚି ମହାରାଜା ! ମାତା ସତ୍ୟବତୀ କହିଛନ୍ତି ପାଣ୍ଡବ ମାନଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ।

ଧୃତରାଷ୍ଟ୍ର: ଫେରାଇ ଆଣିବା ପାଇଁ? ଏଇଟା କଣ ତାଙ୍କର ଆଦେଶ ନା ସଂଦେଶ ପିତୃବ୍ୟ ?

ଭୀଷ୍ମ: ବଡ଼ମାନଙ୍କର ସଂଦେଶକୁ ଆଦେଶଭଳି ମାନିବାକୁ ହେବ ମହାରାଜ ।

ଗାନ୍ଧାରୀ: ସେମାନଙ୍କୁ ଫେରେଇ ଆଣିବା ପାଇଁ ରଥ ପଠାନ୍ତୁ ମହାରାଜ ! ଅନ୍ୟଥା ପ୍ରଜାମାନେ କହିବେ ରାଜସିଂହାସନରେ ବସିବା ପାଇଁ ତମେ ଚକ୍ରାନ୍ତ କରୁଛ ।

ଧୃତରାଷ୍ଟ୍ର: ହସ୍ତିନାର ରାଜମୁକୁଟକୁ ମଥାରେ ପିନ୍ଧିବା ପାଇଁ ମୁଁ କଣ ଅଯୋଗ୍ୟ ଗାନ୍ଧାରୀ ?

ଗାନ୍ଧାରୀ: ମୁଁ ସେୟା କହୁନାହିଁ ଆର୍ଯ୍ୟ ! ହସ୍ତିନାର ପ୍ରଜାମାନେ ପାଣ୍ଡୁଙ୍କୁ ରାଜସିଂହାସନରେ ଦେଖିବାକୁ ଋହାଁନ୍ତି । ପାଣ୍ଡୁ ହିଁ ରାଜା ହେବାପାଇଁ ଅଭିଷିକ୍ତ ହୋଇଛନ୍ତି । ତାଛଡ଼ା ସାଙ୍ଗରେ ତାଙ୍କର ଶିଶୁପୁତ୍ର ଅଛନ୍ତି । ସେମାନଙ୍କୁ ଫେରାଇ ଆଣିବା ପାଇଁ ସାରଥୀକୁ ପଠାଇ ଦିଅ ।

ଧୃତରାଷ୍ଟ୍ର: ଏବଂ ସେମାନେ ଆସିବା ପରେ ସେମାନଙ୍କୁ ସ୍ୱାଗତ ମଧ୍ୟ କରିବାକୁ ପଡ଼ିବ ?

ଗାନ୍ଧାରୀ: ଯେ କଣ ପଋରୁଛ ଆର୍ଯ୍ୟ ? ହସ୍ତିନାର ରାଜା ବନବାସରୁ ଫେରୁଛନ୍ତି ଦୀର୍ଘଦିନ ପରେ । ଆପଣ ରାଜାଙ୍କର ମୁକୁଟ ଫେରାଇ ତାକୁ ସ୍ୱାଗତ କରିବେ ନାହିଁ ?

ଧୃତରାଷ୍ଟ୍ର: ତୁମର ଭ୍ରାତାଙ୍କ କଥା ତମେ ଭୁଲିଯାଉଛ ଗାନ୍ଧାରୀ । ସେ କହୁଥିଲେ ଏ ରାଜମୁକୁଟ ମୋ ମୁଣ୍ଡରେ ବେଶ୍ ମାନୁଛି ।

ଗାନ୍ଧାରୀ: ଅନେକ ଦିନ ହେଲା ପିନ୍ଧିଛତ ! ତମର ଅଭ୍ୟାସ ହୋଇଗଲାଣି । ସେ ଯା'

ହଉ । ମୁକୁଟ ଫେରାଇବାକୁ ପଡ଼ିବ - ଏ କଥା ଜାଣିଲା ପରେ ତମର ମନ ଦୁଃଖ ହେଲାପରି ଲାଗୁଛି । କାହିଁକି ?

ଧୃତରାଷ୍ଟ୍ର: ତମେ କଣ ଚାହୁଁ ନାହଁ ଗାନ୍ଧାରୀ - ଏ ମୁକୁଟ ମୋ ମଥା ଉପରେ ରହୁ ବୋଲି ?

ଗାନ୍ଧାରୀ: କଥାଟା ସେଇଠି ନାହିଁ ଆର୍ଯ୍ୟପୁତ୍ର ! ତମେ ଜ୍ୟେଷ୍ଠ । ହସ୍ତିନାର ଜ୍ୟେଷ୍ଠଭ୍ରାତା ଯେପରି ଉଦାର ଓ ଆଦର୍ଶବାଦୀ ହେବା କଥା, ତାର ଲକ୍ଷଣ ତୁମ ପାଖରେ ଦେଖାଯାଉନାହିଁ । ପ୍ରଜାମାନେ ଯେମିତି ନ ଜାଣନ୍ତୁ - ତମେ ହସ୍ତିନାର ଅଭିଷିକ୍ତ ସମ୍ରାଟ ପାଣ୍ଡୁଙ୍କର ସିଂହାସନରେ କୂଟ ଚକ୍ରାନ୍ତ କରି ବସି ଯାଇଛ ! ଆସନ୍ତୁ ଆର୍ଯ୍ୟପୁତ୍ର ! ଏଠାରେ ନୁହେଁ - ଆମ୍ଭେ ପାଟ ଅଗଣାରେ ପାଣ୍ଡୁ ଓ କୁନ୍ତୀଙ୍କ ପାଇଁ ଅପେକ୍ଷା କରିବା ।

*(ଉଭୟଙ୍କ ପ୍ରସ୍ଥାନ)*

# ଦୃଶ୍ୟ-୨୪

*ପ୍ରବେଶ କଲେ ପାଣ୍ଡୁ । ଋଷ୍ୟଶୃଙ୍ଗ ପର୍ବତରେ ଥିବା ତାଙ୍କ ଆଶ୍ରମର ପ୍ରାଙ୍ଗଣରେ । ସଂଗରେ କୁନ୍ତୀ ଓ ମାଦ୍ରୀ ।*

ପାଣ୍ଡୁ: କେତେକାଳ ? ଆଉ କେତେକାଳ ବୋହିବି ମୁଁ ଏ ଅଭିଶାପ ? ସ୍ୱାଦ ନାହିଁ ଜଳରେ, ସ୍ପର୍ଶରେ ଉଷ୍ମା ନାହିଁ । ଦୃଶ୍ୟ ନାହିଁ ଚକ୍ଷୁରେ, ନାସାରେ ଗଂଧନାହିଁ, ଜ୍ୱାଳା ନାହିଁ କାମନାରେ । ଦିନକୁ ଦିନ ଏ ଦେହ ମୋର ଶୀର୍ଣ୍ଣ, ରୁଗ୍ଣ, ଜରାଗ୍ରସ୍ତ । ହିଂସ୍ର ସରୀସୃପ ଅଧ୍ୟୁଷିତ ଅରଣ୍ୟରେ ଆଶାର ନଷ୍ଟ ଖଡ଼ଗ ଧରି କେତେଦିନ କାଟିବି ମୁଁ ଜୀବନ - ନିରାସକ୍ତ ଏବଂ ନିର୍ବିକଳ୍ପ ?

କୁନ୍ତୀ: ଆମର ଦୁଇଟି ସଂତାନ ଏ ପର୍ଯ୍ୟନ୍ତ ହୋଇସାରିଲେଣି ଆର୍ଯ୍ୟ ! ସେମାନଙ୍କ ସାଗରେ ଖେଳି ବୁଲି ସମୟ କାଟୁ ନାହାନ୍ତି ?

ପାଣ୍ଡୁ: ଦୁଇଟି ପୁତ୍ରରେ ଆଶା ମୋର ପୂର୍ଣ୍ଣ ହେଉନାହିଁ କୁନ୍ତୀ । ଜଣେ ମହର୍ଷି କହିଥିଲେ ମୁଁ ପାଞ୍ଚଟି ପୁତ୍ରଙ୍କର ପିତା ହେବି । ଏଇଥର ଇଚ୍ଛା ହେଉଛି ଇନ୍ଦ୍ରଙ୍କୁ ଆବାହନ କରି ନିଯୋଗ ସୂତ୍ରରେ ଆଉ ଗୋଟିଏ ପୁତ୍ର ଲାଭ କରିବା ପାଇଁ ବର୍ତ୍ତମାନ ଧ୍ୟାନରେ ବସି ପାରିବ ?

କୁନ୍ତୀ: ଯଥା ଆଜ୍ଞା ଆର୍ଯ୍ୟ !

*(କୁନ୍ତୀ ଯାଇ ଧ୍ୟାନରେ ବସିଲେ । ସ୍ୱତଂତ୍ର ଆଲୋକରେ ଇନ୍ଦ୍ର ଦର୍ଶନ ଦେଲେ ଓ ପୁତ୍ରଟିଏ ଉପହାର ଦେଲେ । ପୁତ୍ରଟିକୁ ଧରି କୁନ୍ତୀ ପାଣ୍ଡୁଙ୍କ ପାଖକୁ ଗଲେ । । ପାଣ୍ଡୁ ପୁତ୍ରଟିକୁ ଧରୁ ଧରୁ ଶୂନ୍ୟବାଣୀ ଶୁଭିଲା)*

ଇନ୍ଦ୍ରଙ୍କ ସ୍ୱର: ଏହି ପୁତ୍ର ତୁମର ଦିଗବିଜୟୀ ହେବ । ଏହାର ସମାନ ଧନୁର୍ଯୋଦ୍ଧା ଏ ପୃଥିବୀରେ ଜନ୍ମଗ୍ରହଣ କରିବେ ନାହିଁ । କୁନ୍ତୀ ! ଏହାର ନାମ ରଖିବ ଅର୍ଜୁନ ।

କୁନ୍ତୀ: ମାଦ୍ରୀ ! ମାଦ୍ରୀ ! ତୁ କେଉଁଠି ?

ମାଦ୍ରୀ: (ଦୂରରେ ମନ ଶୁଖାଇ ଠିଆ ହେଲା)

କୁନ୍ତୀ: ତୋର କଣ ହେଲା ମାଦ୍ରୀ ? ତୋ ଆଖିରେ ଲୁହ କାହିଁକି ? ଇନ୍ଦ୍ରଙ୍କ ଔରସରୁ ଏହି ବୀର ପୁତ୍ର ପ୍ରାପ୍ତ ହେଲା । ବୋଧେ ସେଇ ଖୁସିରେ ତମ ଆଖିରୁ ଆନନ୍ଦର ଅଶ୍ରୁ ବୋହିଗଲା ।

ମାଦ୍ରୀ: ନା ଦିଦି ! ମୁଁ ଆନନ୍ଦିତ ହେବାର ସୌଭାଗ୍ୟ ପାଇନାହିଁ ଏ ପର୍ଯ୍ୟନ୍ତ । ଲାଗ

ଲାଗ ତମର ତିନିଗୋଟି ପୁତ୍ର ତିନିଜଣ ଦେବତାଙ୍କ ଆର୍ଶିବାଦରୁ ପ୍ରାପ୍ତ ହେଲା । ତମେ ତିନିପୁତ୍ରର ଜନନୀ ହେଇ ଖୁସି ହୋଇଗଲ ଦିଦି । ହେଲେ ମୁଁ ? ମୋ ଭିତରେ କଣ ଶୁଖିଲା ମରୁଭୂମିଟିଏ ହିଁ ଥିବ? ଆଉକିଛି ନୁହେଁ? ମାତୃତ୍ୱ ନଥିବା ତୃଷିତ ଆତ୍ମାଟିଏ ମତେ ହିଁ ଚିରଦିନ ଖୁଣ୍ଟା ଦଉଥିବ? ଆଉ କିଛି ନୁହେ? ମୁଁ ତମଠାରୁ ବୟସରେ ବଡ଼ ବୋଲି ଜାଣିଛତ?

ପାଣ୍ଡୁ : କୁନ୍ତୀ! ମାଦ୍ରୀ କାହିଁକି ରାଗିଛି?

କୁନ୍ତୀ: ମାଦ୍ରୀ ଅଭିମାନ କରିଛି ।

ମାଦ୍ରୀ: କାହିଁକି କରିବି ନାହିଁ ଆର୍ଯ୍ୟପୁତ୍ର? ମୁଁ କଣ ମା ହବା ପାଇଁ ଅଯୋଗ୍ୟା?

ପାଣ୍ଡୁ: ମୁଁ ଅଯୋଗ୍ୟମାଦ୍ରୀ! ଋଷି କିଂଦମଙ୍କର ଅଭିଶାପ । ମୁଁ ସ୍ତ୍ରୀ ସହ ସହବାସ କରିବା ମୁହୂର୍ତ୍ତଟି ହିଁ ମୋ ଜୀବନର ଅନ୍ତିମ ମୁହୂର୍ତ୍ତ ହୋଇଯିବ । ସେଥିପାଇଁ ବଂଶରକ୍ଷା ପାଇଁ ମୁଁ ଚିନ୍ତିତ ।

ମାଦ୍ରୀ: ସେଇ ଋଷି କିନ୍ଦମ ହିଁ ମତେ ଦୁଇଟି ପୁତ୍ରର ଜନନୀ ହେବା ପାଇଁ ବର ଦେଇଥିଲେ । ତେବେ ତାଙ୍କ କଥା କଣ ମିଥ୍ୟା ହେବ ଆର୍ଯ୍ୟପୁତ୍ର?

ପାଣ୍ଡୁ: (ସ୍ମିତ ହସି) ନା ମାଦ୍ରୀ! କୁନ୍ତୀ! ତୁମେ ଜ୍ୟେଷ୍ଠା । ତୁମେ ଯୋଉ ମଂତ୍ର ଋଷି ଦୁର୍ବାସାଙ୍କଠାରୁ ପାଇଥିଲ । ସେଇଟା ମାଦ୍ରୀକୁ ଶିଖେଇ ପାରିବ ନାହିଁ?

କୁନ୍ତୀ: ତୁ ମନ ଦେଇ ଏକାଗ୍ର ଚିତ୍ତରେ ସେ ମଂତ୍ର ପାଠ କରିବୁ ମାଦ୍ରୀ?

ମାଦ୍ରୀ: ତମେ ଶିଖାଇଦେଲେ ମୁଁ ନିଶ୍ଚୟ ଶିଖିବି ଦିଦି!

କୁନ୍ତୀ: ତା ହେଲେ ଆ!

ପାଣ୍ଡୁ: କୁହ ମାଦ୍ରୀ! କେଉଁ ଦେବତାଙ୍କୁ ଆବାହନ କରିବ?

ମାଦ୍ରୀ: ମୁଁ ଅଶ୍ୱିନୀ କୁମାର ଦ୍ୱୟଙ୍କୁ ଆବାହନ କରିବି । ଚଳିବ ଆର୍ଯ୍ୟ?

ପାଣ୍ଡୁ: ଯାଅ । ଆବାହନ କର ।

*(ମଂଚରେ ଆଲୋକ ପରିବର୍ତ୍ତିତ ହେଲା । କୁନ୍ତୀ ମାଦ୍ରୀଙ୍କୁ ଅଭିନୟରେ ମଂତ୍ରଦୀକ୍ଷା ଦେଲେ । ଗୋଟିଏ କଳଶରୁ ଧାରେ ଧାରେ ପାଣି ଅଜାଡ଼ିଲେ ମାଦ୍ରୀଙ୍କ ହାତକୁ ଏବଂ କାନରେ ମଂତ୍ର ଦେଲେ । ମାଦ୍ରୀ ଯାଇ ଅଶ୍ୱିନୀ କୁମାର ଦ୍ୱୟଙ୍କୁ ଆବାହନ କଲେ । ଦୁହେଁ ଆଶିର୍ବାଦ କଲେ ଏବଂ ମାଦ୍ରୀଙ୍କ କୋଳରେ ଦୁଇଟି ଶିଶୁ ଦୃଶ୍ୟମାନ ହେଲେ ।)*

*(ଜଣେ ସାରଥୀ ଆସି ପହଂଚିଲେ ପାଣ୍ଡୁଙ୍କ ପାଖରେ ।)*

ସାରଥୀ: ପ୍ରଣାମ ମହାରାଜ! ହସ୍ତିନାପୁରକୁ ଫେରିଯିବା ପାଇଁ ମହାରାଜ ଧୃତରାଷ୍ଟ୍ର

ରଥ ପଠାଇଛନ୍ତି ।

ପାଣ୍ଡୁ: ଖୁସିର କଥା ! ବର୍ତ୍ତମାନ ଆମେ ବାହାରିବା କୁନ୍ତୀ । ତୁମର ତିନିପୁତ୍ର ଓ ମାଦ୍ରୀଙ୍କ ଦୁଇପୁତ୍ର ନକୁଳ ଓ ସହଦେବଙ୍କୁ ନେଇ ରଥରେ ବସିଯାଅ ।

ସାରଥୀ: ଆସନ୍ତୁ ମହାରାଜା !

*(ସାରଥୀ ମହାରାଜ ପାଣ୍ଡୁ, କୁନ୍ତୀ ଓ ମାଦ୍ରୀଙ୍କୁ ନେଇ ପ୍ରସ୍ଥାନ କଲା ।)*

(ମଂଚ ଅନ୍ଧକାର)

# ଦୃଶ୍ୟ-୨୫

*ଆଲୋକ ଆସିଲାବେଳକୁ ଧୃତରାଷ୍ଟ୍ର ଓ ଗାନ୍ଧାରୀ ହାତ ଧରାଧରି ହୋଇ ଅଣ୍ଡାଳି ଅଣ୍ଡାଳି ହସ୍ତିନା ରାଜପ୍ରାସାଦର ମୁଖ୍ୟ ପ୍ରାଙ୍ଗଣରେ ପାଣ୍ଡୁଙ୍କୁ ସ୍ୱାଗତ କରିବାପାଇଁ ଠିଆ ହେଇଛନ୍ତି ।*

ଧୃତରାଷ୍ଟ୍ର: ଦେଖ ଗାନ୍ଧାରୀ ! ଭାଇ ପାଣ୍ଡୁକୁ ବନଯାଗରୁ ଡ଼କେଇଛନ୍ତି ପିତାମହୀ । ପିତୃବ୍ୟ ଭୀଷ୍ମ ଆସି ସେଇ ଖବର ଦେଇଥିବାରୁ ମୁଁ ରଥ ପଠେଇ ଦେଇଛି ମାତ୍ର । ଆମେ କାହିଁକି ତାକୁ ସ୍ୱାଗତ କରିବା ପାଇଁ ଏଇଠି ଅପେକ୍ଷା କରିବା ? ସେମାନେ ତ ସିଧା ପିତାମହୀ ସତ୍ୟବତୀଙ୍କ ପାଖକୁ ଯିବେ ।

ଗାନ୍ଧାରୀ: ଆପଣ ଏ ସବୁ କଣ ଚିନ୍ତା କରୁଛନ୍ତି ଆର୍ଯ୍ୟପୁତ୍ର ? ପାଣ୍ଡୁ ହସ୍ତିନାର ରାଜା ରୂପେ ଅଭିଷିକ୍ତ ହୋଇଛନ୍ତି ଏବଂ ଆପଣ ପାଣ୍ଡୁକୁ ଜବରଦସ୍ତ ବନକୁ ପଠାଇଦେଇ ନିଜେ କାମଚଳା ସମ୍ରାଟ ରୂପେ ଦାୟିତ୍ୱରେ ଅଛନ୍ତି । ହସ୍ତିନାର ରାଜା ଫେରିଲା ବେଳକୁ ଆପଣ ତାକୁ ସ୍ୱାଗତ କରିବେ ନାହିଁ ? ପ୍ରଜାମାନେ କଣ କହିବେ ?

ଧୃତରାଷ୍ଟ୍ର: ସ୍ୱାଗତ କରିବାକୁ ପଡ଼ିବ । ଆଶିର୍ବାଦ ବି କରିବାକୁ ପଡ଼ିବ ।

ଗାନ୍ଧାରୀ: ସେଇଟା ଆପଣଙ୍କର କର୍ତ୍ତବ୍ୟ ଆର୍ଯ୍ୟପୁତ୍ର !

ଧୃତରାଷ୍ଟ୍ର: ମଥା ଉପରୁ ଏ ରାଜ ମୁକୁଟ ବାହାର କରି ପାଣ୍ଡୁର ମୁଣ୍ଡରେ ପିନ୍ଧେଇ ଦବାକୁ ହବ ମଧ୍ୟ । ସେଇଟା କଣ ଭଲ ଦିଶିବ ?

ଗାନ୍ଧାରୀ: ରାଜମୁକୁଟଟା ପିନ୍ଧିବାର ଅଧିକାର ପାଣ୍ଡୁର ଅଛି ଆର୍ଯ୍ୟପୁତ୍ର । ରାଜପଦରେ ସେ ଅଭିଷିକ୍ତ । ଆପଣ ନୁହନ୍ତି ।

ଧୃତରାଷ୍ଟ୍ର: ସେଇଟା ମୋର ଦୁର୍ଭାଗ୍ୟ । କିନ୍ତୁ ହସ୍ତିନାର ସିଂହାସନରେ ମୁଁ ବସିଲେ ତମେ କଣ ଖୁସି ହେବ ନାହିଁ ଗାନ୍ଧାରୀ ?

ଗାନ୍ଧାରୀ: କେମିତି ହେବି ନାହିଁ ଆର୍ଯ୍ୟପୁତ୍ର ? ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଶହେ ପୁତ୍ର ଦେଇଛି ମହାରାଜ । ସେମାନେ ଆପଣଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରିବେ ।

ଧୃତରାଷ୍ଟ୍ର: ତଥାପି ତମେ କହୁଚ ମୁଁ ଜ୍ୟେଷ୍ଠପୁତ୍ର ହୋଇ ସୁଦ୍ଧା ହସ୍ତିନାର ସମ୍ରାଟ ନୁହେ । ସେମିତି ମୋର ଜ୍ୟେଷ୍ଠ ପୁତ୍ର ଦୁର୍ଯ୍ୟୋଧନ ମଧ୍ୟ ହସ୍ତିନା ସିଂହାସନରେ ବସି ପାରିବ ନାହିଁ । ପାଣ୍ଡୁ ପୁତ୍ର ଯୁଧିଷ୍ଠିର ତାଠାରୁ ବଡ଼ । ଏଇଟା ବି ମୋ ଭାଗ୍ୟର

ବିଡ଼ମ୍ବନା ।

(ପ୍ରବେଶ କଲେ ଭୀଷ୍ମ)

ପ୍ରଣାମ ଗ୍ରହଣ କରନ୍ତୁ ପିତୃବ୍ୟ !

ଭୀଷ୍ମ: ପାଦଶବ୍ଦରୁ ତମେ ଲୋକମାନଙ୍କୁ ଠିକ୍ ଚିହ୍ନି ପାରୁଚ ପୁତ୍ର । ଶ୍ରବଣେନ୍ଦ୍ରିୟ ହିଁ ତୁମର ଚକ୍ଷୁ ରୂପେ କାମ କରୁଛି । ଆୟୁଷ୍ମାନ ହବ ।

ଗାନ୍ଧାରୀ: (ଭୀଷ୍ମଙ୍କର ପାଦ ସ୍ପର୍ଶ କଲେ)

ଭୀଷ୍ମ: ସୌଭାଗ୍ୟବତୀ ହବ ।

ଧୃତରାଷ୍ଟ୍ର: ମୋ ପାଖକୁ ଆସିବାର କାରଣ କଣ ପିତୃବ୍ୟ ?

ଭୀଷ୍ମ: ମୁଁ ମାତା ସତ୍ୟବତୀଙ୍କର ଦୂତ ରୂପେ ଏଇଠିକି ଆସିଛି ମହାରାଜ ! ପାଣ୍ଡବ ମାନଙ୍କୁ ବନଯାତ୍ରାରୁ ଫେରାଇ ଆଣିବା ପାଇଁ କଣ ବ୍ୟବସ୍ଥା କରିଛନ୍ତି ?

ଧୃତରାଷ୍ଟ୍ର: ମୁଁ ରଥ ପଠେଇ ଦେଇଛି ପିତୃବ୍ୟ । ସାରଥୀ ରଥ ନେଇ ଯାଇଛି । ତାଙ୍କ ପରିବାରଙ୍କୁ ନେଇ ଫେରୁଥିବ । ସେମାନଙ୍କ ଅପେକ୍ଷାରେ ହିଁ ମୁଁ ଓ ଗାନ୍ଧାରୀ ଏଇଠି ପ୍ରାଙ୍ଗଣ ପାଖରେ ଠିଆ ହେଇଛୁ । ମୋର କର୍ତ୍ତବ୍ୟ ସେମାନଙ୍କୁ ସ୍ୱାଗତ କରିବା ।

*(ପ୍ରବେଶ କଲେ ପାଣ୍ଡୁ, କୁନ୍ତୀ, ମାଦ୍ରୀ ଓ ତାଙ୍କର ଛୋଟ ଛୋଟ ପାଞ୍ଚଟି ପୁଅ । ସେମାନେ ମହାରାଜ ଧୃତରାଷ୍ଟ୍ର ଏବଂ ପିତୃବ୍ୟ ଭୀଷ୍ମଙ୍କୁ ପାଦ ଛୁଇଁ ପ୍ରଣାମ କଲେ । ଧୃତରାଷ୍ଟ୍ର ପାଣ୍ଡୁଙ୍କୁ ଆଲିଙ୍ଗନ କରି ପଚାରିଲେ:)*

ଧୃତରାଷ୍ଟ୍ର: ବନଯାତ୍ରା କିପରି କଟିଲା ଭାଇ ପାଣ୍ଡୁ ?

ପାଣ୍ଡୁ: ଘୋର ଅନର୍ଥ ହେଇଗଲା ଭାଇ । ମୋ ହାତରେ ଋଷି କିଂଦମ ଓ ତାଙ୍କ ପତ୍ନୀଙ୍କର ହତ୍ୟା ହୋଇଗଲା ।

ଗାନ୍ଧାରୀ: ଏଇଟା ହତ୍ୟା ନା ଦୁର୍ଘଟଣା ଆର୍ଯ୍ୟ ? ମୁଁ ଜାଣେ ତୁମେ ଜାଣି ଶୁଣି କାହାରିକୁ ହତ୍ୟା କରିବ ନାହିଁ ।

ପାଣ୍ଡୁ: ମୋ କୁଟୀର ବାହାରେ ବୁଲୁଥିବା ଗୋଟିଏ ଗର୍ଜନ କରୁଥିବା ବାଘକୁ ମାରିବା ପାଇଁ ମୁଁ ଶବ୍ଦଭେଦୀ ବାଣ ପ୍ରୟୋଗ କଲି ଓ ତାହା ଯାଇ ଋଷି ଦମ୍ପତିଙ୍କ ବକ୍ଷ ଭେଦ କଲା । ଏଇଟା ଦୁର୍ଘଟଣା ହେଲେ ମଧ୍ୟ ଋଷି ମତେ ମୃତ୍ୟୁ ପୂର୍ବରୁ ଅଭିଶାପ ଦେଲେ । ମତେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ଭାଇ ।

ଧୃତରାଷ୍ଟ୍ର: ଏପରି ଏକ ନୈତିକ ପ୍ରଶ୍ନର ଉତ୍ତର ବିଦୁରଙ୍କ ପାଖରୁ ମିଳିବା ସଂଭାବନା । *(ନିଜ ମସ୍ତକରୁ ରାଜମୁକୁଟ ବାହାର କରି)* ନିଅ ପାଣ୍ଡୁ । ଏଇ ରାଜମୁକୁଟ

ପରିଧାନ କରି ତୁମ୍ଭେ ହସ୍ତିନାର ସମ୍ରାଟ ରୂପରେ ରାଜସଭାକୁ ଯାଅ ଏବଂ ସେଇଠି ପଚ୍ଚର କଣ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ଅଛି । ବିଦୂର ଅବଶ୍ୟ ତୁମକୁ ରାସ୍ତା ଦେଖାଇବେ ।

ଭୀଷ୍ମ: ଦେଖନ୍ତୁ ମହାରାଜ ! ଏ ଘଟଣା ଅରଣ୍ୟରେ ଘଟିଲା । ଏହାର ସାକ୍ଷୀ ଆଉ କିଏ ନାହିଁ । ଋହିଁଥିଲେ ତୁମେ ଏହି ଘଟଣାଟିକୁ ଲୁଋଇ ପାରିଥାନ୍ତ । କିନ୍ତୁ ତମ ହାତରେ ହୋଇଥିବା ପାପକୁ ସ୍ୱୀକାର କରି ନିଜେ ପ୍ରାୟଶ୍ଚିତ୍ତ ଦଣ୍ଡ ଭୋଗିବା ପାଇଁ କହି ହସ୍ତିନା ସମ୍ରାଟର ସଚ୍ଚୋଟ ପଣର ପ୍ରମାଣ ଦେଇଛ । ହସ୍ତିନାର ପ୍ରଜାମାନେ ତମପାଇଁ ଗର୍ବ ଅନୁଭବ କରିବେ ।

ପାଣ୍ଡୁ: ଯଥା ଆଜ୍ଞା ପିତୃବ୍ୟ !

*(ସମସ୍ତଙ୍କ ପ୍ରସ୍ଥାନ)*

# ଦୃଶ୍ୟ-୨୬

*ହସ୍ତିନାର ରାଜସିଂହାସନରେ ବସିଛନ୍ତି ମହରାଜା ପାଣ୍ଡୁ । ମିଂତ୍ରୀ ବିଦୂର ଦଣ୍ଡାୟମାନ ହୋଇ ଶାସ୍ତ୍ର କଥା କହୁଛନ୍ତି ।*

ବିଦୂର: ଦ୍ୱାପର ଯୁଗରେ ଋଷିହତ୍ୟା ଏକ ଜଘନ୍ୟ ଅପରାଧ ମହରାଜା ! ଏହି ଅପରାଧ ପାଇଁ ସମୟେ ସମୟେ ମୃତ୍ୟୁଦଣ୍ଡ ମଧ୍ୟ ଦିଆଯାଇଛି ।

ଭୀଷ୍ମ: କିନ୍ତୁ ଏହା ଏକ ହତ୍ୟାକାଣ୍ଡ ନୁହେଁ, ଗୋଟାଏ ଦୁର୍ଘଟଣା ।

ବିଦୂର: ହତ୍ୟା ହେଉ କି ଦୁର୍ଘଟଣା – ମହାରାଜ ପାଣ୍ଡୁ ଶବ୍ଦଭେଦୀ ବାଣ ପଠାଇବାର ସୀମା ଉଲ୍ଲଂଘନ କରିଛନ୍ତି । ଏଣୁ ପ୍ରାୟଶ୍ଚିତ୍ତ କରିବା ଆବଶ୍ୟକ ।

ପାଣ୍ଡୁ: ବେଶ୍ ! ମୁଁ ହସ୍ତିନାର ରାଜା ହୋଇଥିବାରୁ ପ୍ରାୟଶ୍ଚିତ୍ତ କରିବି । ପ୍ରାୟଶ୍ଚିତ୍ତ ସ୍ୱରୂପ ମୁଁ ସ୍ୱଇଚ୍ଛାରେ ବନବାସ କରିବି ଏବଂ ବନ ମଧ୍ୟରେ ହିଁ ପ୍ରାୟଶ୍ଚିତ୍ତ ଯଜ୍ଞ ହେବ । ଭ୍ରାତା ଧୃତରାଷ୍ଟ୍ର ମୋ ଅନୁପସ୍ଥିରେ ହସ୍ତିନାର ସମ୍ରାଟ ଭାବେ ରାଜକାର୍ଯ୍ୟ ଚଳାଇବେ ।

*(ନିଜ ମସ୍ତକରୁ ମୁକୁଟ ବାହାର କଲେ । ଭୀଷ୍ମ ଧୃତରାଷ୍ଟ୍ରଙ୍କର ମସ୍ତକରୁ ରାଜମୁକୁଟ ବାହାର କଲେ)*

ଧୃତରାଷ୍ଟ୍ର: ଯଦି ଈଶ୍ୱରଙ୍କର ଏହାହିଁ ଇଛା, ତାହା ହିଁ ହେବ ।

ଭୀଷ୍ମ: (ପାଣ୍ଡୁଙ୍କ ମୁକୁଟ ନେଇ ଧୃତରାଷ୍ଟ୍ରଙ୍କ ମଥାରେ ଲଗାଇଲେ)

ପାଣ୍ଡୁ: ଭ୍ରାତାଶ୍ରୀ ଆପଣ ମୋର ପିତୃତୁଲ୍ୟ । ମୁଁ ଆପଣଙ୍କ ହାତରେ ହସ୍ତିନାର ରାଜ୍ୟଭାର ଅର୍ପଣ କରୁଛି । ମୁଁ ହସ୍ତିନା ସମ୍ରାଟଙ୍କୁ ବିନମ୍ର ପ୍ରଣାମ ଜଣାଉଛି ।

*(ଆଣ୍ଠୁମାଡ଼ିବସି ପ୍ରଣାମ କଲେ ଧୃତରାଷ୍ଟ୍ରଙ୍କୁ)*

(ଅନ୍ଧାର)

# ଦୃଶ୍ୟ-୨୭

*ପ୍ରଥମେ ପ୍ରବେଶ କଲେ କୁନ୍ତୀ ଏବଂ ଡାକିଲେ ।*

କୁନ୍ତୀ: ଆସ ମାଦ୍ରୀ !

ମାଦ୍ରୀ: (ପ୍ରବେଶ କଲେ) ।
*(ମାଦ୍ରୀ ଓ କୁନ୍ତୀ ଉଭୟେ ସାଦା ଧଳାବସ୍ତ୍ର ପିନ୍ଧିଛନ୍ତି । ସବୁ ଅଳଂକାର ଖୋଲି ଦେଇ ବନବାସ କରିବା ପାଇଁ ପ୍ରସ୍ତୁତ । ପାଣ୍ଡୁ ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ)*

ପାଣ୍ଡୁ: ଇଏ କି ବେଶ ? କଣ ହୋଇଛି ତମ ଦୁଇ ଜଣଙ୍କର ? ଧଳା ଲୁଗା କଣ ପିନ୍ଧିଚ ?

କୁନ୍ତୀ: ଆମେ ବି ତମ ସାଙ୍ଗରେ ବନବାସ କରିବାକୁ ବାହାରିଛୁ ।

ପାଣ୍ଡୁ: କାହିଁକି ? ଅପରାଧ ମୁଁ କରିଛି । ପ୍ରାୟଶ୍ଚିତ୍ତ ମୁଁ କରିବି । ତମେ ଦି'ଜଣ କାହିଁକି ବନବାସ ଦଣ୍ଡ ପାଇବ ?

କୁନ୍ତୀ: କାରଣ ଆମେ ଦି ଜଣ ତମର ପତ୍ନୀ । ଆମ ଅନୁପସ୍ଥିତିରେ ତମେ କୌଣସି ପ୍ରାୟଶ୍ଚିତ୍ତ କରିପାରିବନାହିଁ । ଆର୍ଯ୍ୟପୁତ୍ର ! ବିବାହର ହୋମାଗ୍ନି ସାମନାରେ ଆମେ ପରସ୍ପରଙ୍କ ସୁଖଦୁଃଖରେ ସହଭାଗୀ ହେବା ପାଇଁ ଶପଥ ନେଇଛୁ ।

ମାଦ୍ରୀ: ଆମର ସଂପର୍କ କେବଳ ରାଜପ୍ରାସାଦ ଭିତରେ ସୀମିତ ନୁହେଁ ଆର୍ଯ୍ୟ, ବନଯାତ୍ରାରେ ମଧ୍ୟ ଆମର ଭାଗ ଅଛି ।

କୁନ୍ତୀ: ତ୍ରେତୟା ଯୁଗରେ... ଯେତେବେଳେ ରାମଚନ୍ଦ୍ର ଚଉଦ ବର୍ଷ ବନବାସରେ ବାହାରିଲେ ସୀତା ସାଙ୍ଗରେ ଯାଇଥିଲେ କି ନାହିଁ ?

ପାଣ୍ଡୁ: ଠିକ୍ ଅଛି । ଆସ । *(ପ୍ରସ୍ଥାନ କଲାବେଳେ ଭୀଷ୍ମ ଆସିଲେ । କୁନ୍ତୀ, ମାଦ୍ରୀ ଓ ପାଣ୍ଡୁ ପ୍ରଣାମ କଲେ ।*

ଭୀଷ୍ମ: ରଥ ପ୍ରସ୍ତୁତ ଅଛି ।

ପାଣ୍ଡୁ: ରଥର ଆବଶ୍ୟକତା କଣ ଥିଲା ପିତୃବ୍ୟ ?

ଭୀଷ୍ମ: ରଥ ତୁମ ପାଇଁ ନୁହେଁ ପୁତ୍ର ! କୁନ୍ତୀ ଓ ମାଦ୍ରୀଙ୍କ ପାଇଁ । ଆସ ।
*(ପ୍ରସ୍ଥାନ, ଅଂଧକାର)*

## ଦୃଶ୍ୟ-୨୮

*ଋଷ୍ୟଶୃଙ୍ଗ ପର୍ବତରେ ପାଣ୍ଡୁଙ୍କ ଆଶ୍ରମ । ଦୌଡ଼ି ଆସିଲେ ବାଳକ ଭୀମ ଓ କୁନ୍ତୀଙ୍କୁ କହିଲେ:*

ଭୀମ: ମା ମତେ ଖୁବ୍ ଭୋକ ! ଖାଇବାକୁ ଦିଅ !

କୁନ୍ତୀ: ଆଉ ଟିକେ ରହିଯା ! ଭାଇମାନେ ତୋର ଗୁରୁକୁଳରୁ ଆହୁରି ଫେରିନାହାନ୍ତି । ସେମାନେ ଫେରନ୍ତୁ ।

ଭୀମ: ନାଇଁ ମା ! ମତେ ଭାରୀ ଭୋକ ।

କୁନ୍ତୀ: କିରେ ବଡ଼ ଭାଇ ପରା ଖାଇନି ଏ ପର୍ଯ୍ୟନ୍ତ ! ତୁ କେମିତି ଆଗ ଖାଇଦବୁ ?

ଭୀମ: ହେ ଭଗବାନ ! ମତେ ଆଉଥରେ ଜନ୍ମ ଦେଇ ବଡ଼ଭାଇ କରିଦିଅ ନ ହେଲେ ଛୋଟଭାଇ ! କେବେ ମଝିଆ କରି ଜନ୍ମ ଦିଅନି !

(ଆଶ୍ରମରୁ ଘରିଭାଇ ଫେରିଲେ)

କୁନ୍ତୀ: ଆସି ପିଲାମାନେ ଖାଇବ ଆସ ।

ଯୁଧିଷ୍ଠିର: ପିତାଶ୍ରୀ ଏ ପର୍ଯ୍ୟନ୍ତ ଫେରିନାହାନ୍ତି ମାତା ।

କୁନ୍ତୀ: ଫେରିବେ । ସେ ବର୍ତ୍ତମାନ ସ୍ନାନ ସମାପନ କରି ଧ୍ୟାନରେ ବସିଥିବେ । ଧ୍ୟାନ ସରିଲେ ଫେରିବେ । ତମେ ପିଲାମାନେ ଖାଇନିଅ ।

*(ସମସ୍ତେ ଭିତରକୁ ପ୍ରସ୍ଥାନ କଲେ)*

## ଦୃଶ୍ୟ-୨୯

*ଋଷ୍ୟଶୃଙ୍ଗ ପର୍ବତରେ ଥିବା ଏକ ଝରଣାର କୂଳ । ଝରଣାଟି ଜଳପ୍ରପାତ ପରି । ଉଚ୍ଚ ପର୍ବତରୁ ଝରଣାର ଜଳଧାରା ପ୍ରପାତ ହୋଇ ତଳେ ଥିବା ପଥର ଉପରେ ପଡୁଛି । ଘଞ୍ଚ ଅରଣ୍ୟ । ଗୋଟିଏ ବୃକ୍ଷମୂଳେ ମହାରାଜ ପାଣ୍ଡୁ ଧ୍ୟାନମଗ୍ନ ହୋଇ ବସିଛନ୍ତି । ତାଙ୍କର କନିଷ୍ଠାରାଣୀ ମାଦ୍ରୀ ସେଇ ପ୍ରପାତରେ ସ୍ନାନ ସମାପନ କରି ମାଠିଆରେ ଜଳ ନେଇ ସେଇବାଟେ ଯାଉଥିବା ସମୟରେ ଦେଖୁଛନ୍ତି ଯୁବକ ପାଣ୍ଡୁ । ମାଦ୍ରୀ ଝରଣା ଜଳରେ କେଶ ମୁକୁଳା କରି ସ୍ନାନ କରୁଥିବା ଦୃଶ୍ୟ ଦେଖିଲେ ଧ୍ୟାନରୁ ଉଠିଲେ ଏବଂ ମନେ ମନେ ଉତ୍ତେଜିତ ହେଲେ । ଦେଖୁ ଦେଖୁ ତାଙ୍କର ସ୍ୱର ପ୍ରଚ୍ଛଦ ପଟରୁ ପ୍ରକ୍ଷେପିତ ହେଲା । ସତେ ଯେମିତି ଏହା ତାଙ୍କର ସ୍ୱଗତୋକ୍ତି ।*

ପାଣ୍ଡୁଙ୍କ ଅନ୍ତଃସ୍ୱର: ବାଃ ! କି ସୁନ୍ଦର ତମ ଶରୀର - ଭୂଗୋଳ, ମାଦ୍ରୀ ! ଆଜିଯାଏଁ ତମକୁ ଆଖି ପୁରାଇ ଦେଖି ନଥିଲି । ଆଖି ପଡ଼ିଯିବା ମାତ୍ରେ ବିଳସି ଉଠିଲା ଏକ ଛବିଳ ଜଂଗଲ । ଯୋଉଠି ତମେ ତରଙ୍ଗିଣୀ ପରି ଝରଣାର ପାଣିରେ ସ୍ନାନ କରୁଛ... ତାର ଅତି ପାଖରେ ମୁଁ ଧ୍ୟାନରେ ବସିଛି । ବିନା ସ୍ପର୍ଶରେ ମୁଁ ମୁଦି ହୋଇଗଲି ଲାଜକୁଳି ପତ୍ର ପରି । ମୋ ଦେହରେ କେଉଁଠି ଫୁଲର କଂପନ ତ କେଉଁଠି ମୃଦୁ ମୃଦୁ ଅଧୀର ପବନ ! ରୋମାଞ୍ଚ ଓ ପୁଲକର ଗୋଟିଏ ଡ଼ୋରୀରେ ମତେ କିଏ ବାଂଧିଦେଲା ଅଗ୍ନେନକ । ଆଖି କାଇଁ ଲାଜ ଲାଜ ଓଠ ଓଦାଓଦା, ରକ୍ତ ମାଂସରେ ଗଢ଼ା ଏ ଦେହରେ ମୋର ଆସିଗଲା ଇଏ କେଉଁ ଅଚିହ୍ନା ବସନ୍ତ ?

(ପାଣ୍ଡୁଙ୍କର ସ୍ୱରରେ ଏ ସ୍ୱଗତୋକ୍ତିଟି ସରିଲା ବେଳକୁ ମାଦ୍ରୀ ସ୍ନାନ ସମାପନ କରି ମାଠିଆରେ ପାଣିଧରି ପାଣ୍ଡୁ ବସିଥିବା ସ୍ଥାନ ଦେଇ ଯାଉଥିଲେ । ପାଣ୍ଡୁ ଡାକିଲେ)

ପାଣ୍ଡୁ: ମାଦ୍ରୀ ! ଏଇଠିକି ଆସ ମାଦ୍ରୀ !

ମାଦ୍ରୀ : ନା, ଆର୍ଯ୍ୟ ! ଏ ବନସ୍ଥଳୀ ନିତାନ୍ତ ନିର୍ଜନ ।

ପାଣ୍ଡୁ: ସେଇଥିପାଇଁ ତ ଡାକୁଛି ପ୍ରିୟେ, ମୋର ପାଖକୁ ଆସ ।

ମାଦ୍ରୀ: ମତେ ବିବଶ କରନାହିଁ ଆର୍ଯ୍ୟ !

ପାଣ୍ଡୁ: (ଉଠି ନିଜେ ଚାଲି ଆସିଲେ ପାଖକୁ) ତମେ ଯେ ଏତେ ଅପୂର୍ବ ସୁନ୍ଦରୀ...

ଏକଥା ଜାଣିବାର ସୌଭାଗ୍ୟ ମୋର ଏ ପର୍ଯ୍ୟନ୍ତ ଜୁଟିନଥିଲା । ଆସ । (ପାଣ୍ଡୁ ଗୋଟାଏ ଆବେଗରେ ମାଦ୍ରୀଙ୍କୁ ଆଲିଙ୍ଗନ କରି ଚୁମାଟିଏ ଦେବା ଅବସରରେ ହଠାତ୍ ଅଚେତ୍ ହୋଇ ତଳେ ପଡ଼ିଗଲେ । ମାଦ୍ରୀଙ୍କର ମନେ ପଡ଼ିଗଲା କିଂଦମ ଋଷିଙ୍କର ଅଭିଶାପ କଥା । ସେ ଭୟଭୀତ ହୋଇ ଚିତ୍କାର କଲେ)

ମାଦ୍ରୀ: ଦିଦି ! ଦିଦି !! (ତାପରେ ପାଣ୍ଡୁଙ୍କ ମୁହଁକୁ ଧରି) ଆର୍ଯ୍ୟ ! କଣ କହୁଥିଲ ଆଉଥରେ କୁହ । ଆର୍ଯ୍ୟ ! ଆର୍ଯ୍ୟ ! (କହି ବିଳାପ କଲେ । ଦୌଡ଼ି ଆସିଲେ କୁନ୍ତୀ) ମୋର ସର୍ବନାଶ ହୋଇଗଲା ଦିଦି !

କୁନ୍ତୀ: ମୁଁ ତାଂକୁ ଏତେ ଦିନ ଧରି ସଂଭାଳି ରଖିଥିଲି । କିନ୍ତୁ ତୁ... ସବୁକଥା ଜାଣିଶୁଣି କେମିତି ଏମିତି କଲୁ ? ତାଙ୍କୁ ରକ୍ଷା କରିବା ଛାଡ଼ି ତୁ ତାଙ୍କୁ ଏଇ ନିର୍ଜନ ସ୍ଥାନକୁ ଭୁଲାଇ ଆଣିଲୁ ? ଧନ୍ୟଲୋ ମାଦ୍ରୀ । ମୋଠାରୁ କେତେ ଦିଗରୁ କେତେଗୁଣରେ ତୁ ଧନ୍ୟା । ଯୋଉ ମୁହଁରେ ତାଙ୍କର ସଂଭୋଗର ଆନନ୍ଦ ଉଛୁଳି ଉଠୁଥିଲା ସ୍ୱାମୀଙ୍କର ସେମିତି ଆନନ୍ଦ ଉଜ୍ୱଳ ମୁହଁକୁ ତୁ ଦେଖିପାରିଛୁ !

ମାଦ୍ରୀ: ନାଇଁ ଦିଦି ! ମୁଁ ନା-ନା- କରୁଥିଲି । ବହୁତ ବୁଝେଇଲି । ହେଲେ ଶେଷ ମୁହୂର୍ତ୍ତରେ ମୁଁ ନିଜକୁ ସଂଭାଳି ପାରିଲି ନାହିଁ ଦିଦି । ତମର ଆତ୍ମବଳ ମୋ ପାଖରେ ନାଇଁ

କୁନ୍ତୀ: ହଉ । ମୁଁ ବଡ଼ବୋହୂ । ମୁଁ ଯେଉଁ ରାସ୍ତାରେ ଯିବି ମତେ ଆଉ ଫେରାଇ ଆଣିବନି । କି ବାରଣ କରିବନି । ଏଇ ମୁଁ ସ୍ୱାମୀଙ୍କ ପଛେ ପଛେ ଗଲିଲି । ଏଇ ପୁଅମାନଙ୍କର ରକ୍ଷଣାବେକ୍ଷଣା, ଦେଖାଶୁଣା କରିବ ।

ମାଦ୍ରୀ: ନାଇଁ ଦିଦି ! ମୁଁ ସ୍ୱାମୀଙ୍କର ଅନୁଗାମୀ ହେବି । ମୋ ପାଇଁ ତାଙ୍କର ଜୀବନ ଗଲା । ମତେ ଅନୁମତି ଦିଅ । ତମେ ଯଦି ସ୍ୱାମୀଙ୍କ ଚିତାରେ ସତୀ ହୋଇଯିବ, ତୁମ ପିଲାମାନଙ୍କ ପ୍ରତି ମୁଁ ସମାନ ବ୍ୟବହାର କରିପାରିବି ନାହିଁ । ମୋ ହାତରେ ସେଇ ପାପ ଯେମିତି ନ ହୁଏ । ତମେ ମତେ ସେମିତି ଦୟାକର ଦିଦି ! ତମେ କିନ୍ତୁ ମୋ ନକୁଳ ଓ ସହଦେବଙ୍କୁ ନିଜ ପେଟର ପିଲାଭଳି ସଂଭାଳିବ । ମୁଁ ଯାଉଛି । ସ୍ୱାମୀଙ୍କ ଚିତାରେ ଆତ୍ମାହୁତି ଦେବି ।

*(ଏହା କହି ମାଦ୍ରୀ ପ୍ରସ୍ଥାନ କଲେ ।)*

# ଦୃଶ୍ୟ-୩୦

ସାଇକ୍ଲୋରାମା ମଂଚରେ ପାଣ୍ଡୁଙ୍କର ଚିତା ଜଳୁଛି । ମାଦ୍ରୀ ସେଇ ଚିତାରେ ଆତ୍ମାହୁତି ଦେଲେ । କୁନ୍ତୀ ଦୂରରେ ଠିଆ ହୋଇ କ୍ରଂଦନ କଲେ । (ଅନ୍ଧାର, ଅଗ୍ନିଶିଖାର ଆଲୋକ)

# ଦୃଶ୍ୟ-୩୧

*ହସ୍ତିନାର ରାଜପ୍ରାସାଦ ଆଗରେ କୁନ୍ତୀ ପାଣ୍ଡୁ ଓ ମାଦ୍ରୀଙ୍କ ଦରପୋଡ଼ା ଶବ ଓ ସାଙ୍ଗରେ ପାଞ୍ଚଟି ଶିଶୁଙ୍କୁ ନେଇ ପହଞ୍ଚିଲେ । ସାଙ୍ଗରେ ସୂତ୍ରଧର ଭୂମିକାରେ ଅଭିନୟ କରୁଥିବା ଅଭିନେତାମାନେ ଗୈରିକ ବସନ ପିନ୍ଧିଥିବା ବନର ଋଷିମାନଙ୍କ ଭୂମିକାକୁ ରୂପାନ୍ତରିତ ହେଲେ । ସମସ୍ତେ ଆସିଲା ବେଳକୁ ଭୀଷ୍ମ ଦଣ୍ଡାୟମାନ ସିଂହଦ୍ୱାର ସାମ୍ନାରେ ।*

ଭୀଷ୍ମ: ହେ ଋଷିବୃନ୍ଦ । ଆପଣମାନେ ପୁତ୍ର ପାଣ୍ଡୁ ଏବଂ ପୁତ୍ରବଧୂ ମାଦ୍ରୀଙ୍କ ମୃତଦେହ ସାଙ୍ଗରେ ହସ୍ତିନା ପର୍ଯ୍ୟନ୍ତ ଆସିଲେ । ଆପଣମାନଙ୍କୁ କୋଟିକୋଟି ଧନ୍ୟବାଦ । ଆସନ୍ତୁ ରାଜପ୍ରାସାଦ ଭିତରକୁ ଆସିବା ହୁଅନ୍ତୁ ।

ଋଷି ୧: ଆମର କର୍ତ୍ତବ୍ୟ ଏଇଠି ଶେଷ ହେଲା ମହାରାଜା !

ଋଷି ୨: ହସ୍ତିନା ସମ୍ରାଟଙ୍କର ମରଶରୀରକୁ ପ୍ରାସାଦରେ ପହଞ୍ଚାଇବା ଥିଲା ଆମର କର୍ତ୍ତବ୍ୟ ।

ଋଷି ୩: ମହାରାଣୀ କୁନ୍ତୀ ଓ ତାଙ୍କ ସଂତାନ ମାନଙ୍କୁ ଗ୍ରହଣ କରନ୍ତୁ ମହାରଥୀ । ଗ୍ରହଣ କରନ୍ତୁ ରାଜା ଓ ରାଣୀଙ୍କ ମୃତଦେହ ।

ଋଷି ୪: ଆପଣଙ୍କ ବଂଶ ପରଂପରା ଅନୁଯାୟୀ ରାଜାଙ୍କ ଦଶାହ କ୍ରିୟା କରନ୍ତୁ ।

ଋଷି ୫: ଭଗବାନ ଏ ଅଶୁଭ ସମୟ ଭିତରେ ଚଳିବା ପାଇଁ ଧୈର୍ଯ୍ୟ ଦିଅନ୍ତୁ ଆପଣଙ୍କୁ !

ଋଷି ୬: ଏଥର ଆମକୁ ଆଜ୍ଞା ଦିଅନ୍ତୁ । ଆମେ ଫେରିଯିବୁ *(ଭୀଷ୍ମ ପ୍ରଣାମ କଲେ ଓ ଋଷିମାନେ ଫେରିଗଲେ । କୁନ୍ତୀ ଆସି କାନ୍ଦି କାନ୍ଦି ଭୀଷ୍ମଙ୍କ ପାଦ ଛୁଇଁଲେ । ଭୀଷ୍ମ, କୁନ୍ତୀଙ୍କୁ ଉଠାଇନେଲେ । ତାପରେ ପାଞ୍ଚପୁତ୍ରଙ୍କୁ ଗେଲ କଲେ । ଭିତରକୁ ନେଲେ ।)*

## ଦୃଶ୍ୟ-୩୨

*ହସ୍ତିନାର ରାଜସିଂହାସନ । ଅବାକ୍ ଗମ୍ଭୀର ହୋଇବସିଛନ୍ତି ଧୃତରାଷ୍ଟ୍ର । ଗାନ୍ଧାରୀ ଶୋକାକୁଳ ଅବସ୍ଥାରେ ଧୃତରାଷ୍ଟ୍ରଙ୍କ କାନ୍ଧ ଉପରେ ଭରା ଦେଇଛନ୍ତି । ପାଖରେ ବାଳକ ଦୁର୍ଯ୍ୟୋଧନ । ଭୀଷ୍ମ କୁନ୍ତୀ ଓ ତାଙ୍କ ପାଞ୍ଚପୁତ୍ରଙ୍କୁ ନେଇ ପ୍ରବେଶ କଲେ । ଧୃତରାଷ୍ଟ୍ର ପଦଶବ୍ଦ ଶୁଣି ଠିଆ ହୋଇଗଲେ । କୁନ୍ତୀ କାନ୍ଦି କାନ୍ଦି ଧୃତରାଷ୍ଟ୍ରଙ୍କ ପାଦ ଛୁଇଁଲେ ।*

କୁନ୍ତୀ : ଜ୍ୟେଷ୍ଠଶ୍ରୀ ! ବନବାସରେ ମୋର ସବୁ ସୌଭାଗ୍ୟ ସରିଗଲା ।(କାନ୍ଦିଲେ)

ଧୃତରାଷ୍ଟ୍ର: ମୁଁ ଜନ୍ମାନ୍ଧ ଥିଲି କୁନ୍ତୀ, ପାଣ୍ଡୁ ଆଉ ମାଦ୍ରୀଙ୍କ ପରେ ଆଜି ଲାଗିଲା ମୁଁ ପୁଣି ଦ୍ୱିତୀୟଥର ପାଇଁ ଅନ୍ଧ ହୋଇଗଲି ।

କୁନ୍ତୀ: (ଗାନ୍ଧାରୀଙ୍କ ପାଦ ଛୁଇଁ) ସମସ୍ତେ ମତେ ଛାଡ଼ି ଚାଲିଗଲେ ଦିଦି । ମୁଁ ସାରା ଜୀବନପାଇଁ ଏକଲା ହୋଇଗଲି ।

ଗାନ୍ଧାରୀ: ମୋ ପାଦଛୁଉଁଛ କାହିଁକି କୁନ୍ତୀ ? ଆ' ମୋ ଛାତିରେ ଲାଗିଯା' ।ଏଇଠି ତୋ ପାଇଁ ଅଜସ୍ର ସ୍ଥାନ ରହିଛି ।

କୁନ୍ତୀ: ଦିଦି । ମୁଁ ଏକଲା ହୋଇଗଲି ଦିଦି ! ଋଷ୍ୟଶୃଙ୍ଗ ପର୍ବତରେ ମୋର ସିନ୍ଦୁରଗାର ଲିଭିଗଲା ।

ଗାନ୍ଧାରୀ: ଧୈର୍ଯ୍ୟଧର କୁନ୍ତୀ । ଋଷ୍ୟଶୃଙ୍ଗ ବନରୁ ଏ ପାଞ୍ଚୋଟି ରତ୍ନ ନେଇକି ଆସିଛୁ । ଜୀବନ ସାରା ଏମାନେ ତୋର ସାଥୀ ହୋଇରହିବେ ।

ଧୃତରାଷ୍ଟ୍ର: ଦୁର୍ଯ୍ୟୋଧନ ! ତୋ ବଡ଼ଭାଇ ଯୁଧିଷ୍ଠିରଙ୍କୁ ପ୍ରଣାମ କର ।

ବାଳକ ଦୁର୍ଯ୍ୟୋଧନ: ନା, ମୁଁ ତାକୁ ପ୍ରଣାମ କରିବିନାହିଁ । ସେମାନେ ବଣରେ ରହିବା କଥା, ଏଠିକି କାଇଁକି ଆସିଛନ୍ତି ?

ଗାନ୍ଧାରୀ: ଦୁର୍ଯ୍ୟୋଧନର କଥାଶୁଣି ମତେ ଡ଼ର ମାଡୁଛି ଆର୍ଯ୍ୟ !

ଧୃତରାଷ୍ଟ୍ର: ରାଜପୁତ୍ର ସିଏ । ଏ ସ୍ୱାଭିମାନ କ୍ଷତ୍ରିୟ ସଂତାନର ଲକ୍ଷଣ ।

ଦୁର୍ଯ୍ୟୋଧନ: ଏମାନଙ୍କୁ ରାଜପ୍ରାସାଦରୁ ବାହାର କରିଦିଅନ୍ତୁ ପିତାଶ୍ରୀ । ନହେଲେ ମୁଁ ପିଟି ପିଟି ବାହାର କରିଦେବି ।

ଭୀମ: ଏୟ ! ମୁହଁ ସମ୍ଭାଳି କଥାବାର୍ତ୍ତା କର । ହସ୍ତିନା ସମ୍ରାଟ ମୋର ପିତାଶ୍ରୀ । ମୁଁ ମଧ୍ୟ ରାଜପୁତ୍ର ।

କୁନ୍ତୀ: ଛି ବାପା ଭୀମ । ତୁ ରାଜପୁତ୍ର ବୋଲି ଦୁର୍ଯ୍ୟୋଧନ ଜାଣିନି । ରାଗୁଛୁ କାହିଁକି ?

ଗାନ୍ଧାରୀ: ଚାଲ ପିଲାମାନେ । ବହୁତ ବାଟ ଚାଲିଚାଲି ଆସିଛ । ଖାଇବ ଚାଲ । ଖାଇ ପିଇ ବିଶ୍ରାମ କରିବ । ପିଲାମାନଙ୍କୁ ନେଇ ଭିତରକୁ ଚାଲ ।

ଦୁର୍ଯ୍ୟୋଧନ: ମାତାଶ୍ରୀ ! ମୋ ଘରେ ଏମାନଙ୍କୁ ରହିବାକୁ ଦେବିନି । ଏଇଟା ମୋ ଘର ।

ଭୀମ: ଏଇଟା ମୋର ମଧ୍ୟ ଘର ।

ଦୁର୍ଯ୍ୟୋଧନ: ନା, ମୁଁ ତୋର ଗୋଡ଼ଭାଙ୍ଗି ଦେବି ।

ଭୀମ: କଣ କହିଲୁ ? (ଭୀମ ଯାଇ ଦୁର୍ଯ୍ୟୋଧନକୁ ଧରି ଓଲଟାଇ ଫୋପାଡ଼ି ଦେଲା)

ଧୃତରାଷ୍ଟ୍ର: କଣ ହେଲା ଗାନ୍ଧାରୀ ?

ଗାନ୍ଧାରୀ: କଣ ହେଲା କୁନ୍ତୀ ?

କୁନ୍ତୀ: ଭୀମ ଯାଇ ଦୁର୍ଯ୍ୟୋଧନକୁ ଓଲଟାଇ ଫୋପାଡ଼ି ଦେଲା ।

ଧୃତରାଷ୍ଟ୍ର: ଏହା କ୍ଷତ୍ରିୟ ସଂତାନର ଲକ୍ଷଣ । ବଳ ପରୀକ୍ଷା କରିବା ପାଇଁ କାଲି ଆମେ ରାଜପ୍ରସାଦ ପ୍ରାଙ୍ଗଣରେ ଖଣ୍ଡାଯୁଦ୍ଧ ପ୍ରତିଯୋଗିତା ଆରମ୍ଭ କରିବା । ଆର୍ଯ୍ୟାବର୍ତ୍ତର ସବୁ ଅଂଚଳରୁ ଯୋଦ୍ଧା ମାନେ ଆସିବେ । ସେଇଠି ଜଣାପଡ଼ିବ ବଳବାନ କିଏ । ତମେ ଯୋଉ ଶସ୍ତ୍ର ବିଦ୍ୟା ଶିକ୍ଷା କରିଚ ତାର ପରୀକ୍ଷା ହେବ ।

## ଦୃଶ୍ୟ-୩୩

*ଧିରେ ଧିରେ ଆଲୋକ ଆସିଲା ବେଳକୁ ଦୁଇଜଣ ଚଉଦ ପନ୍ଦର ବର୍ଷର  କ୍ଷତ୍ରିୟ ରାଜକୁମାର ଖଣ୍ଡା ଯୁଦ୍ଧ କରୁଛନ୍ତି । ସାମାନ୍ୟ ଉପରେ ଗୋଟିଏ ଉଚ୍ଚ ବାରଣ୍ଡାରେ କୁନ୍ତୀ, ଗାନ୍ଧାରୀ, ଧୃତରାଷ୍ଟ୍ର କୃପାଚାର୍ଯ୍ୟ ଭୀଷ୍ମ ଓ ବିଦୂର ପ୍ରଭୃତି ଦର୍ଶକ ରୂପରେ ବସିଛନ୍ତି । ଅର୍ଜୁନଙ୍କ ସହ ଜଣେ ସୂତ୍ରଧର ଖଣ୍ଡାଯୁଦ୍ଧ କରିପାରନ୍ତି । କେହି ହାରିଲେ ନାହିଁ । ଖଣ୍ଡାଯୁଦ୍ଧ ଚାଲିଥିବା ଅବସ୍ଥାରେ ଭୀଷ୍ମ ଆସି ଠିଆ ହେଲେ ଏବଂ ପ୍ରତିଯୋଗୀତା ବଂନ୍ଦ କରିବାର ଇଶାରା ଦେଲେ । ଖଣ୍ଡାଯୁଦ୍ଧ ଆରମ୍ଭରେ ସୂତ୍ରଧର ମାନେ ମଧ୍ୟ ଖଣ୍ଡାଧରି ପ୍ରବେଶ କରି ଯୁଦ୍ଧ କଲେ । ବସୁଶେଣ ସମସ୍ତଙ୍କୁ ପରାସ୍ତ କରିଦେଲେ ।*

କୃପାଚାର୍ଯ୍ୟ: କିଏ ତୁମେ ବାଳକ ? କୋଉ ରାଜ୍ୟର ରାଜପୁତ୍ର ? କିଏ ତୁମର ପିତା ? କିଏ ତମର ମାତା ?

ବାଳକ: ପିତା ମୋର ଅଧିରଥ, ମାତା ମୋର ରାଧା । ନୋଳିଆ ବସ୍ତିରେ ଘର । ନାଁ ଗାଁ ଠିକଣା ନ ଥିବା ମୁଠାଏ ଉପେକ୍ଷା ମୁଁ ! ଦଳିତ ଘରର ପୁଅ, ଅର୍କ୍ଷିତ ସୂତ୍ରପୁତ୍ର ।

କୃପାଚାର୍ଯ୍ୟ: କିଏ ତୁମର ଗୁରୁ ମୁଁ ଜାଣେ ନା ବତ୍ସ ! କିନ୍ତୁ ସୂତ୍ରପୁତ୍ର ହୋଇଥିବା ଯୋଗୁଁ ତମେ ଏ ପ୍ରତିଯୋଗୀତାରେ ଭାଗ ନେଇ ପାରିବ ନାହିଁ । ଏହି ପ୍ରତିଯୋଗୀତା ଶୂଦ୍ରମାନଙ୍କୁ ଜିତିଲେ ମଧ୍ୟ ପୁରସ୍କାର ଦେବନାହିଁ ।

ବାଳକ: ପୁରସ୍କାର ମତେ କିଏ ଦେବ ମାନ୍ୟବର ! ମୁଁ ତ ପୃଥିବୀର ଶେଷ ହାହାକାର । ମୋର ଦରକାର ପ୍ରତିଯୋଗୀତାରେ ଭାଗ ନେବା । ବଂଚିତର ବଂଚନା ମୁଁ, ଲଜ୍ଜିତର ଲଜ୍ଜା । ତଥାପି ମତେ ଅନୁମତି ଦିଅନ୍ତୁ ଆର୍ଯ୍ୟଶ୍ରେଷ୍ଠ । ମୁଁ ଏ ଯୁଦ୍ଧ ଲଢ଼ିବି । ମୋ ଶସ୍ତ୍ରବିଦ୍ୟାର  ପରାକାଷ୍ଠା ଦେଖେଇବା ପାଇଁ ଗୋଟାଏ ମାତ୍ର ସୁଯୋଗ ଦିଅନ୍ତୁ ।

କୃପାଚାର୍ଯ୍ୟ: ତୁମ ଅସ୍ତ୍ରବିଦ୍ୟାର ଉଦାହରଣ ଦେଖି ମୁଁ ପ୍ରସନ୍ନ । ତୁମେ ଶୂଦ୍ର ହୋଇଥିଲେ ମଧ୍ୟ ମୁଁ ତୁମକୁ ଏ ଆର୍ଯ୍ୟ ପ୍ରାଙ୍ଗଣରେ ଅସ୍ତ୍ରବିଦ୍ୟା ପ୍ରଦର୍ଶନ ପାଇଁ ଅନୁମତି ଦେଉଛି । ଯୁଦ୍ଧ ଆରମ୍ଭ କର ।

*(ଏଥର ପୁଣିଥରେ ଅର୍ଜୁନଙ୍କ ସାଙ୍ଗରେ ଯୁଦ୍ଧ କଲା ବାଳକଟି । କିଛି ସମୟ ପରେ ମଂଚ ଆସ୍ତେ ଆସ୍ତେ ଅନ୍ଧାର ହୋଇ ପୁଣି ଆଲୋକିତ ହେଲା ବେଳକୁ*

*ବାଳକ ଦୁଇଟି ବଡ଼ ହୋଇ ଗଲେ । ଜଣେ ହେଲା ଅର୍ଜୁନ, ଅନ୍ୟ ଜଣକ କର୍ଣ୍ଣ, କେହି ହାରିଲେ ନାହିଁ ଓ ଖଣ୍ଡାଖେଳର ଜୟ ପରାଜୟ ଘୋଷଣା କରାଗଲା ନାହିଁ । ପାଞ୍ଚଜଣ ସୂତ୍ରଧର ଖଣ୍ଡାଧରି ଆସି କର୍ଣ୍ଣଙ୍କ ସଙ୍ଗେ ଯୁଦ୍ଧ କଲେ । କର୍ଣ୍ଣ ସମସ୍ତଙ୍କୁ ପରାଜିତ କଲେ । ଏହି ସମୟରେ ରାଜକୁମାର ଦୁର୍ଯ୍ୟୋଧନ ଆସିଲେ ଏବଂ କର୍ଣ୍ଣଙ୍କୁ ଆଲିଙ୍ଗନ କଲେ । ସୂତ୍ରଧରମାନେ ପଛେଇ ପଛେଇ ଅନ୍ତରାଳକୁ ଚାଲିଗଲେ ।)*

ଦୁର୍ଯ୍ୟୋଧନ: ଆସ ବଂଧୁ ! ଆଜିଠାରୁ ତୁମେ ସୂତ୍ରପୁତ୍ର ନୁହ, ମୋର ବଂଧୁ । ମୋ ରାଜ୍ୟର ଅଂଗଦେଶକୁ ତୁମକୁ ଦାନ କଲି । ଆଜିଠାରୁ ତମେ ଅଂଗରାଜ । ମୋ ଦୃଷ୍ଟିରେ ତମେ କ୍ଷତ୍ରିୟ । ଆସ । ଅନ୍ତଃପୁରକୁ ଆସ । ତୁମେ ମୋର ଅତିଥି ।

*(ଏତିକିବେଳେ ବସିଥିବା ଆସନ ପାଖରେ ଠିଆ ହୋଇ ପଡ଼ିଲେ କୁନ୍ତୀ । ଆଶିର୍ବାଦ ମୁଦ୍ରାରେ ହାତଟେକି ଦେଲେ । ଆଲୋକ ତାଙ୍କ ମୁହଁରେ ସଂପାତିତ ହେଲା । କୁନ୍ତୀ ଏକ ଅବାକ୍ ଆଶ୍ଚର୍ଯ୍ୟ ନେତ୍ରରେ ଚାହିଁ ରହିଲେ । କର୍ଣ୍ଣ ଓ ଦୁର୍ଯ୍ୟୋଧନ ଚାଲିଯାଉଥିବା ଗତିପଥକୁ । ତାଙ୍କ ପାଟିରୁ ଆପେ ଆପେ ବାହାରି ଆସିଲା-)*

କୁନ୍ତୀ: ତା' ହେଲେ କର୍ଣ୍ଣ ମୋର ବଂଚିଛି । କୋଟି କୋଟି ପ୍ରଣାମ ତୁମକୁ ରାଧା ! ତମ ବକ୍ଷରୁ ଦୁଗ୍ଧ ଦେଇ ବଂଚେଇଛ ମୋର ଅବିବାହିତା ଜୀବନର ପ୍ରଥମ ସଂତାନକୁ । ତାକୁ ଏତେ ବଡ଼ କରିଚ, ବପୁବାନ ଯୋଦ୍ଧା କରିଛ... ତମକୁ କୋଟି କୋଟି ପ୍ରଣାମ । ହେ ଅଚିହ୍ନା ସାରଥି ଅଧିରଥ ! ଚରମ ଭ୍ରାଂତିରେ ମୁଁ ମରୀଚିକାକୁ ମୁଂଦାଏ ପାଣି ମାଗି ଦେଇଥିଲି । ତମେ ମୋ ଶିଶୁପୁତ୍ରକୁ ମଂଜୁଷାରୁ ଉଠେଇ ଆଣିଚ.. ଚିଲ ଶାଗୁଣା ମୁହଁରୁ ଉଦ୍ଧାର କରି ତାକୁ ପୁନର୍ଜୀବନ ଦେଇଛ... ସେତକ ମୋ ପାଇଁ ଯଥେଷ୍ଟ ! ତୁ ଯୋଉଠି ଥା ପୁଅ.. ଭଲରେ ଥା.. ବଂଚି ରହିଥା... ତତେତ ମୁଁ ସମୟ ନଦୀରେ ଭସେଇ ଦେଇଚି । ସମୟ ତତେ କୋଟି ପରମାୟୁ ଦେଇଥାଉ ।

*(ଆବହ ସଂଗୀତରେ ନାରୀକଣ୍ଠରେ ଏକ ଶାସ୍ତ୍ରୀୟ ଆଳାପ ଶୁଣାଗଲା । ସେ ଆଳାପ ଏକ ବିକଳ ମାତାର କ୍ରନ୍ଦନ ପରି ଶୁଭିଲା । ଆଲୋକ କ୍ରମଶଃ ନିଷ୍ପ୍ରଭ ହୋଇ ଅନ୍ଧାରରେ ରୂପାନ୍ତରିତ ହେଲା । ଅନ୍ଧାରରେ ଶୁଭିଲା ସୂତ୍ରଧର ମାନଙ୍କର ସମବେତ କଣ୍ଠର ଆବୃତ୍ତି)*

*(ମଂଚ ଉପରେ ଏକାକୀ କର୍ଣ୍ଣ । ଅନ୍ଧକାର)*

## ଦୃଶ୍ୟ-୩୪

*ଆସ୍ତେ ଆସ୍ତେ ହାଲ୍‌କା କମଳା ରଂଗର ଆଲୋକ ପ୍ରବେଶ କଲା ମଂଚ ଉପରକୁ । ସେଥିରେ ନୃତ୍ୟ ଛନ୍ଦରେ ପଦକ୍ଷେପ ଦେଇ ପ୍ରବେଶ କଲେ ପାଞ୍ଚଜଣ ସୂତ୍ରଧର ଏବଂ ନିମ୍ନବାକ୍ୟ ଗୁଡ଼ିକୁ ଆବୃତ୍ତି କରୁଥିଲେ ସମବେତ କଣ୍ଠରେ ।*

ସମବେତ ସ୍ୱର: ହେ ସମୟ ଜୀବନର ରୁଦ୍ର ଗତି ତମେ
ହେ ସମୟ କ୍ଷମତାର କ୍ଷୁବ୍ଧ ତୃଷା ତମେ
ହେ ସମୟ ତୁମ ତୁଳୀରେ ମୂକ ପାଏ ଭାଷା
ହସ୍ତିନାର ବଗିଚାରେ ଫୁଟାଇ ଦିଅହେ ଆଜି
କୋଟିକୋଟି ମଣିଷର ଆଶା ।

(ବର୍ତ୍ତମାନ ମଂଚର ଆଲୋକ ବଦଳିଲା । ଶବ୍ଦ ପ୍ରକ୍ଷେପଣର ଛନ୍ଦ ବଦଳିଲା । ଏଥିସହ ପିଟାଯାଉଥିବା ବାଦ୍ୟ କ୍ଷଂତ୍ରରେ ତାଳ ବଦଳିଗଲା । ସୂତ୍ରଧରମାନେ ଗାଇଲେ)

ସୂତ୍ରଧର ୧: ସମୟର ଜୈତ୍ର ଉଡ଼େ ଦିଗବଳୟ ଚିରି
ରାତ୍ରି ଶେଷେ ଯୁଦ୍ଧ ହେବ ଭାଇଭାଇ
ରାତ୍ରୀ ଶେଷେ ହେଲେଣି ବଇରୀ ।

ସୂତ୍ରଧର ୨: ସମୀରଣ କିଏ ତୁମେ ଆଣିଛ ଏ ମହାଯୁଦ୍ଧ ବାଣୀ
ସନ୍ଧ୍ୟାର ଏ ଉନ୍ମାଦେ ଶୁଭେ ମେଘ ମନ୍ଦିରା ବାଣୀ । ।

ସୂତ୍ରଧର ୩: ଆଗାମୀ ସକାଳ ଡ଼ାକୁଛି ଆମକୁ ଆମେ ଯେ ମୁକ୍ତିକାମୀ
କ୍ଷେତ୍ରି କୂଳର ସରଣୀ ହୁଡ଼ିବୁ ହେବୁ ରେ ଅଗ୍ରଗାମୀ । ।

ସୂତ୍ରଧର ୪: ସମୟ ଚଳିଛି ତେଫାନ ସମାନ ସାନକୁ କରୁଛି ମାନୀ
ପବନ ଅଶୁଭ ଅଣଚଷଶ ହେଲେ ହେବରେ ଜୀବନ ହାନି ।

ସୂତ୍ରଧର ୫: ସୂର୍ଯ୍ୟ ହେ ତୁମେ ଅସ୍ତ ହୁଅନ୍ତା ଜଳୁଥାଅ ଅବିରତ
ଏରାତି ନ ପାହୁ ସକାଳ ନ ହେଉ ନ ହେଉ ରକ୍ତପାତ ।

ସୂତ୍ରଧର ୬: ହସ୍ତିନା ଦେବ ଅତ୍ୟାଚରର ସୁଦୀର୍ଘ ଇସ୍ତାହାର
ଆକାଶେ ଉଠିବ ଧୂଆଁ ଜଳିଯିବ ଶ୍ୟାମଳବନ ପ୍ରାନ୍ତର ।

(ଏଇ ଶବ୍ଦ ଗୁଡ଼ିକ ଆବୃତ୍ତି କରି କରି ସୂତ୍ରଧରମାନେ ଚକ୍ରାକାରରେ ବୁଲିବେ ଏବଂ କ୍ରମଶଃ ଆବୃତ୍ତିର ଛନ୍ଦ ଦ୍ରୁତତର ହେବ ଓ ବଂଦ ହେବ)

ସୂତ୍ରଧର ୨: ରାତି ପାହିଲେ ଆରମ୍ଭ ହୋଇଯିବ ଯୁଦ୍ଧ ।

ସୂତ୍ରଧର ୩: ହସ୍ତିନାର ହଜାର ହଜାର ସୈନିକ ମରିବେ । ନାଗରିକ ମାନେ ନଷ୍ଟ ହେବେ ।

ସୂତ୍ରଧର ୪: ଦିଭାଗ ହୋଇ ମରିବେ । ଦଳେ ରହିବେ କୌରବ ଙ୍କ ପଟରେ ଏବଂ ଆଉ ଦଳେ ଧର୍ମରାଜ ଯୁଧିଷ୍ଠିରଙ୍କ ପଟେ । ହଜାର ହଜାର ହସ୍ତିନା ରମଣୀଙ୍କ ମଥାରୁ ସିନ୍ଦୁର ଲିଭିଯିବ । ସେମାନଙ୍କ କ୍ରନ୍ଦନରେ ଫାଟିଯିବ ଯୁଦ୍ଧଭୂମି ।

ସୂତ୍ରଧର ୫: ହସ୍ତିନାର ଆକାଶରେ ଛଞ୍ଚାଣ ଉଡ଼ିବେ । ରାତି ହେଲେ କୁରୁକ୍ଷେତ୍ରରେ ଶ୍ୱାନ ଓ ଶୃଗାଳମାନଙ୍କ ଡାକ ଶୁଭିବ । ସେମାନେ ଖାଇବାକୁ ଆସିବେ ମୃତସୈନିକ ମାନଙ୍କର ଶବମାନଙ୍କୁ । *(ଏହି ସଂଳାପ ଗୁଡ଼ିକ କହିଲାବେଳକୁ ସୂତ୍ରଧର ମାନେ ନିଜେ ଯୁଦ୍ଧର ସହଭାଗୀ ରୂପେ ଅଭିନୟ କରିବେ । ଉଦାହରଣ ସ୍ୱରୂପ "ହଜାର ହଜାର ହସ୍ତିନା ରମଣୀଙ୍କ ମଥାରୁ ସିନ୍ଦୂର ଲିଭିଯିବ" କହିଲା ବେଳେ ସୂତ୍ରଧର-୪ ନିଜେ କାନ୍ଦିବ । ଏତେ ବେଶୀ କାନ୍ଦିବ ଯେ ମୂର୍ଚ୍ଛା ହୋଇଯିବ । ଦୁଇଜଣ ସହ ଅଭିନେତା ତାକୁ ଧରି ପକାଇବେ)*

ସୂତ୍ରଧର ୧: ତାହେଲେ କାହିଁକି ଏ ଯୁଦ୍ଧ ?

ସୂତ୍ରଧର ୨: ଦୁର୍ଯ୍ୟୋଧନର ଅହଂକାର ଯୋଗୁଁ । ସିଏ ହିଁ ପ୍ରଥମେ କହିଲା: ବିନା ଯୁଦ୍ଧେ ଦେବନାହିଁ ସୂଚ୍ୟଗ୍ର ମେଦିନୀ ।

ସୂତ୍ରଧର ୩: ସମ୍ରାଟ ଧୃତରାଷ୍ଟ୍ର ସିନା ଅଂଧ ! ମାତା ଗାନ୍ଧାରୀଙ୍କ ପରି ସତ୍ୟଦ୍ରଷ୍ଟା ନାରୀ ଥାଉ ଥାଉ ଯୁଦ୍ଧ କାହିଁକି ହେବ ? ବିଦୂରଙ୍କ ପରି ଧର୍ମାତ୍ମା ମଂତ୍ରୀ ଥାଉ ଥାଉ ଏ ଅଧର୍ମ ଯୁଦ୍ଧ କାହିଁକି ହେବ ?

ସୂତ୍ରଧର ୪: ଭୀଷ୍ମ, କୃପାଚାର୍ଯ୍ୟ ଆଉ ଦ୍ରୋଣଙ୍କ ପରି ଯୋଦ୍ଧା ଗୋଟାଏ ପଟେ ଏବଂ ପାଣ୍ଡବ ମାନଙ୍କ ପାଖରେ କେହିନାହାନ୍ତି । କିଛି ନାହିଁ । ଛଦ୍ମ ବେଶରେ ଲୁଚି ଲୁଚି ବଣରେ ବୁଲୁଛନ୍ତି । ତଥାପି ଯୁଦ୍ଧ ହେବ ?

ସୂତ୍ରଧର ୫: ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଥିଲା । ବଂଧୁତା ଥିଲା । ଗୋଟିଏ ଗୁରୁକୁଳରେ ଶିକ୍ଷା ଲାଭ କରିଥିଲେ ସେମାନେ । ହଠାତ୍ କଣ ହେଲା ସେମାନଙ୍କ ବଂଧୁତା ବଦଳିଗଲା ଶତ୍ରୁତାରେ । *(ସୂତ୍ରଧର ଖଣ୍ଡାଟିଏ ଉଠାଇ ଯୁଦ୍ଧ କରିବା ଭଂଗୀରେ ବାମପଟ ୱିଙ୍ଗସ୍ କଡ଼କୁ ଯାଇ ଏକ ଅଦୃଶ୍ୟ ଶତ୍ରୁ ଛାତିରେ ଖଣ୍ଡାଟି ଭୁଷିଦେଇ ଚିତ୍କାର କଲା ।)* ଆଃ !

ଚିତ୍କାର : (ଅନ୍ୟାନ୍ୟ ସୂତ୍ରଧରମାନେ ମଧ୍ୟ ଚିତ୍କାର କଲେ)

ସୂତ୍ରଧର ୧: ସମସ୍ତେ କହୁଛନ୍ତି ଶକୁନି ଖଳନାୟକ ।

ସୂତ୍ରଧର ୨: ନା, ଦୁର୍ଯ୍ୟୋଧନର ଅହଂକାର !

ସୂତ୍ରଧର ୩: ଯୁଧିଷ୍ଠିରଙ୍କର କୂଟନୀତି ।

ସୂତ୍ରଧର ୪: ତା' ବୋଲି ଅସ୍ୱଧରିବା ଛଡ଼ା ଅନ୍ୟ କୌଣସି ପନ୍ଥା ନଥିଲା ? ବିଦୁର ଆଉ ଭୀଷ୍ମ ଥାଉ ଥାଉ କୁରୁକ୍ଷେତ୍ରରେ ରକ୍ତ ଢ଼ାଳିବା ଛଡ଼ା ଅନ୍ୟବାଟ ନଥିଲା ? ଏକାଠି ଖାଉଥିଲେ ଧୃତରାଷ୍ଟ୍ରଙ୍କ ଶତପୁତ୍ର ଆଉ ପଞ୍ଚପାଣ୍ଡବ । ପିଲାଦିନ ସାରା ଏକାଠି ଖେଳୁଥିଲେ ଆଉ ବଡ଼ ହେଲାପରେ ପରସ୍ପରଙ୍କୁ ହତ୍ୟା କରିବେ ?

ସୂତ୍ରଧର ୫: ଏଇ ଦେଖ କିଏ ଆସୁଛନ୍ତି ? କର୍ଣ୍ଣ !

ସୂତ୍ରଧର ୧: କର୍ଣ୍ଣ ! ଦୀର୍ଘବାହୁ, ସୁଠାମ ଗଠନ, ଓଜ-ଦୀପ୍ତ ଓ ସଂଭ୍ରାନ୍ତ ରୂପ... କର୍ଣ୍ଣ !
*(କର୍ଣ୍ଣ ପ୍ରବେଶ କଲେ ଓ ନିମ୍ନ ମଂଚକୁ ଆସିଲେ । କାଳ୍ପନିକ ଗଂଗାନଦୀରେ କାଳ୍ପନିକ ଅଭିନୟରେ ସ୍ନାନ ସମାପନ କଲେ । ଏହି ଅଭିନୟ ଚାଲିଥିଲା ବେଳେ ସୂତ୍ରଧରମାନଙ୍କର ସଂଳାପ ନିମ୍ନମତେ)*

ସୂତ୍ରଧର ୨: ଅଥଚ ସୂତ୍ରପୁତ୍ର ବୋଲି ତାକୁ ପ୍ରତ୍ୟାଖ୍ୟାନ କରାଗଲା ।

ସୂତ୍ରଧର ୧: ସେଇଟା ପୁରୁଣା ଖବର । ଦୁର୍ଯ୍ୟୋଧନ ତାଙ୍କୁ ଅଂଗ ଦେଶର ରାଜା କରି ଦେଇଛନ୍ତି । ବର୍ତ୍ତମାନ ସେ ଦାନୀ କର୍ଣ୍ଣନାମରେ ଖ୍ୟାତ ।

ସୂତ୍ରଧର ୩: କିଏ କିଏ କୁହନ୍ତି ସେ ବଡ଼ ଗର୍ବୀ, ଏକଜିଦିଆ ।

ସୂତ୍ରଧର ୪: କିନ୍ତୁ ଦେଖ, ସେ କିପରି ସାଧାରଣ ଲୋକପରି ଏଇଠି ଗଂଗା ସ୍ନାନ ସମାପନ କରି ଫେରୁଛନ୍ତି ।

ସୂତ୍ରଧର ୫: ସ୍ନାନ ସମାପନ କରି ସେ ତର୍ପଣ କରିବେ ।

ସୂତ୍ରଧର ୧: ତର୍ପଣ ସାରି ଗଂଗାକୂଳରେ ଠିଆ ହୋଇ ରହିବେ ଅଂଗରାଜ । ରାଜ୍ୟରେ ଯିଏ ଯାହା ଯାଚନା କରିବେ ବିନା ଦ୍ୱିଧାରେ ସେ ଦାନ କରିବେ ।
*(କର୍ଣ୍ଣ ସ୍ନାନ ସମାପନ କରି ଆଂଜୁଳାଏ କାଳ୍ପନିକ ପାଣିଧରି ଗାଂଗାକୂଳର ଗୋଟିଏ ଉଚ୍ଚସ୍ଥାନରେ ଠିଆ ହେଲେ ଏବଂ ଘୋଷଣା କଲେ:)*

କର୍ଣ୍ଣ: ମୁଁ ଅଂଗରାଜ କର୍ଣ୍ଣ । ଦଶଦିଗପାଳଙ୍କୁ ଏବଂ ସୂର୍ଯ୍ୟଙ୍କୁ ସାକ୍ଷୀରଖି ଗଂଗାକୂଳର ଅଧିବାସୀମାନଙ୍କୁ କହୁଛି । ଯାହାର ଯାହା ଯାଚନା କରିବା କଥା କର । ମୁଁ ଦେବି । ଦେବାପାଇଁ ଶପଥ କରିଛି । ମତେ ମୋର ଧର୍ମ ମାଗିବ ନାହିଁ, ପୌରଷ ମାଗିବ ନାହିଁ । ଏଇ ଦୁଇଟିକୁ ଛାଡ଼ିଦେଲେ କର୍ଣ୍ଣର ନ ଦେବାର ବୋଲି କିଛି ନାହିଁ ଏ ଜୀବନରେ ।

ସୂତ୍ରଧର ୨: ସେ ମହାଦାନୀ ! ସ୍ୱର୍ଣ୍ଣ, ରତ୍ନ, ପ୍ରବାଳ, ମୁକ୍ତା ଯାହା ମାଗିଲେ ଦେବେ ।

ସୂତ୍ରଧର ୩: ଆମେ ତାଙ୍କୁ ମାଗିବା ?

ସୂତ୍ରଧର ୪: ମାଗିଲେ ନିଶ୍ଚୟ ଦେବେ ।

ସୂତ୍ରଧର ୫: ମାଗିବ ଯଦି ମାଗ... ଏ ପ୍ରଳୟଙ୍କରୀ ଯୁଦ୍ଧକୁ ବନ୍ଦ କରିଦେବେ ।

ସୂତ୍ରଧର ୧: ସେ କିପରି ଯୁଦ୍ଧ ବଂଦ କରିବେ ? ଯୁଦ୍ଧ ତ ଦୁର୍ଯ୍ୟୋଧନ ଚାହୁଁଛି । ଚାହୁଁଛି, ପାଣ୍ଡବମାନଙ୍କୁ ନିଶ୍ଚିହ୍ନ କରିଦେବା ପାଇଁ । ଅଂଗରାଜ ହାତରେ କଣ ଅଛି ? ଯୁଦ୍ଧ ସାଙ୍ଗରେ ସଂପର୍କ କଣ ?

ସୂତ୍ରଧର ୨: ଦୁର୍ଯ୍ୟୋଧନ ତାଙ୍କର ବଂଧୁ ! କର୍ଣ୍ଣଙ୍କ କଥା ସେ ନିଶ୍ଚୟ ରଖିବ ।

ସୂତ୍ରଧର ୩: ସେପଟୁ କିଏ ଜଣେ ସ୍ତ୍ରୀ ଲୋକ ଆସୁଛନ୍ତି । କିଏ ସିଏ ?

ସୂତ୍ରଧର ୧: ମହାରାଣୀ କୁନ୍ତୀ ।

(ପ୍ରବେଶ କଲେ କୁନ୍ତୀ)

ସୂତ୍ରଧର ୨: ମହାରାଜା ପାଣ୍ଡୁଙ୍କର ପତ୍ନୀ କୁନ୍ତୀ । ସୂର୍ଯ୍ୟ, ବାୟୁ ଇନ୍ଦ୍ରଙ୍କ ପରି ଦେବତାମାନଙ୍କ ଆଶୀର୍ବାଦରୁ ପ୍ରାପ୍ତ ପାଞ୍ଚପୁତ୍ରଙ୍କର ଜନନୀ କୁନ୍ତୀ ଆସୁଛନ୍ତି । ।

(ବରାଭୟ ମୁଦ୍ରାରେ ଦକ୍ଷିଣ ହସ୍ତକୁ ଟେକି ପ୍ରବେଶ କଲେ କୁନ୍ତୀ)

କୁନ୍ତୀ: ହସ୍ତିନାର ନାଗରିକ ଗଣ ! ମୁଁ ମଂତ୍ରଣା ସଭାରୁ ସଦ୍ୟ ଫେରୁଛି । ଚିନ୍ତା କରିବା ପାଇଁ କୌଣସି ସମୟ ନଥିଲା ମୋ ପାଖରେ । ସେ ସବୁ ମୋଠାରୁ ଜ୍ୟେଷ୍ଠ । ସେମାନେ ନିଷ୍ପତ୍ତି ନେଲେ ରାତି ପାହିଲେ ଯୁଦ୍ଧ ହେବ ।

ସୂତ୍ରଧର ୧: ଆମର ଅନୁମାନ ମହାରାଣୀ ମହାରାଜ କର୍ଣ୍ଣଙ୍କ ସାଙ୍ଗରେ କିଛି ପରାମର୍ଶ କରିବେ । ଆମେ କଣ ଏଇଠୁ ଚାଲିଯିବୁ ରାଜମାତା ?

କୁନ୍ତୀ: ସେପଟେ ଯାଇ ଟିକିଏ ଦୂରେ ଠିଆ ହେବ । ହେ ହସ୍ତିନାର ନାଗରିକ ବୃନ୍ଦ ! ମୁଁ ଯାହାକଥା ହେବି, ତାହା ଅତ୍ୟନ୍ତ ଗୋପନୀୟ । କୃଷ୍ଣ ହିଁ ଜାଣେ ସେ ଗୁପ୍ତ କଥା । ଅବଶ୍ୟ ସେ ଗୁପ୍ତ କଥା ଦିନେ ପ୍ରକଟ ହେବ । ସମସ୍ତେ ଜାଣିବେ । ସମସ୍ତେ ଜାଣିଲାବେଳକୁ ଆମେ ସବୁ ଇତିହାସରେ ରୂପାନ୍ତରିତ ହୋଇସାରିଥିବା । ତେବେ ଗୋଟେ ସର୍ତ୍ତରେ ତମେ ସବୁ ଅଦୂରରେ ଠିଆ ହେବ । ସର୍ତ୍ତଟା ହେଲା ଯଦି ତମ କାନରେ ଆମ କଥା ବାଜିବ, ତାକୁ ଗୋପନ ରଖିବ ।

ସୂତ୍ରଧର ୨: ଆମେ ତ୍ରିବାର ସତ୍ୟ କଲୁ । ଯାହା ଶୁଣିବୁ ଗୋପନ ରଖିବୁ ।

ସୂତ୍ରଧର ୧: ଗୋପନ ରଖିବୁ ।

ସୂତ୍ରଧର ୩: ଗୋପନ ରଖିବୁ ।

ସୂତ୍ରଧର ୪: ଯାହା ଶୁଣିବୁ, ସବୁ ଗୋପନ ରଖିବୁ ।

କୁନ୍ତୀ: ଯାଅ ! ଅନ୍ତରାଳକୁ ଚାଲିଯାଅ...

*(ସୂତ୍ରଧରମାନେ ପଛେଇ ପଛେଇ ମଂଚ ଉପରକୁ ନିଷ୍କ୍ରାନ୍ତ ହେଲେ ।)*
*(କର୍ଣ୍ଣ ସେମିତି ଉଚ୍ଚ ଯାଗାଟି ଉପରେ ଠିଆ ହୋଇଥାଆନ୍ତି ।)*

କୁନ୍ତୀ: ପ୍ରଚଣ୍ଡ ଖରା । ସୂର୍ଯ୍ୟଙ୍କ ତେଜରେ ଦେହ ଜଳିଯାଉଛି । ତଥାପି ଠିଆ ହୋଇଛି କର୍ଣ୍ଣ । ସତେ ଯେମିତି ଗୋଟିଏ ବିଶାଳ ବୃକ୍ଷ । ଆଉ ମୁଁ ସେ ବିଶାଳ ବୃକ୍ଷ ମୂଳକୁ ଆସିଛି ଟିକିଏ ଶୀତଳ ଛାୟାର ଆଶ୍ରୟ ପାଇଁ । ମୁଁ ଛାୟା ପ୍ରାର୍ଥୀନୀ । ଆଃ ! ଆଖିକୁ ଏ ଖରା ଖୁବ୍ ବାଧୁଚି । ଆପେ ଆପେ ଆଖି ମୁଦି ହୋଇ ଯାଉଛି ।

*(କୁନ୍ତୀ ନିମ୍ନ ମଂଚରେ ବାମପଟକୁ ଦଣ୍ଡାୟମାନ ହେଲେ । କର୍ଣ୍ଣ ପାହାଚରୁ ଓହ୍ଲାଇ ଉଚ୍ଚସ୍ଥାନ ଉପରେ ତଳକୁ ଆସିଲେ । କୁନ୍ତୀଙ୍କ ପଛପଟେ ହାତଯୋଡ଼ି ଠିଆ ହୋଇ କହିଲେ-)*

କର୍ଣ୍ଣ : ମୁଁ ଅନ୍ୟମନସ୍କ ଥିଲି ଦେବୀ । ମୋର ପ୍ରଣାମ ଗ୍ରହଣ କରନ୍ତୁ । ଆସନ ଗ୍ରହଣ କରନ୍ତୁ । ମୁଁ ଅନ୍ୟ ମନସ୍କ ଥିଲି । ଆପଣଙ୍କ କଥାଶୁଣି ପାରିନଥିଲି । ଅପରାଧ ମାର୍ଜନା କରନ୍ତୁ ।

କୁନ୍ତୀ: (କୌଣସି ଏକ ସ୍ଥାନରେ ବସିଲେ)

କର୍ଣ୍ଣ: ମୁଁ ଅଧିରଥ ଓ ରାଧାର ପୁତ୍ର କର୍ଣ୍ଣ । ଆଦେଶ କରନ୍ତୁ ଦେବୀ । ମୁଁ ଆପଣଙ୍କର କି ସେବା କରିପାରେ ? *(ଥାଳୀରେ କିଛି ମିଠା ଓ ଅଳେଇଚ ନେଇ ବଢ଼ାଇ ଦେଲେ କୁନ୍ତୀଙ୍କ ହାତକୁ)*

କୁନ୍ତୀ: ମୁଁ କିଏ, କୁଆଡ଼େ ଆସିଚି ପଚାରିଲ ନାହିଁ ତ କର୍ଣ୍ଣ !

କର୍ଣ୍ଣ: ପରିଚୟ ଅନାବଶ୍ୟକ । ଅତିଥିମାନେ ଅତିଥି । ଯଦି ଇଚ୍ଛା ହୁଏ । ଆପଣ ପରିଚୟ ଦେଇପାରନ୍ତି ।

କୁନ୍ତୀ: ସମଗ୍ର ଆର୍ଯ୍ୟାବର୍ତ୍ତରେ, ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ମତେ ସମସ୍ତେ କୁନ୍ତୀ ବୋଲି ଜାଣନ୍ତି ।

କର୍ଣ୍ଣ: କୁନ୍ତୀ ? ଅର୍ଜୁନର ମାତା ?

କୁନ୍ତୀ: ଯୁଧିଷ୍ଠିର, ଭୀମ, ଅର୍ଜୁନ - ତିନିପୁତ୍ରର ମାତା ଏବଂ ମୋର ସାନ ଯା ମାଦ୍ରୀ ସତୀ ହୋଇଗଲା ପରେ ତାର ପୁତ୍ର ନକୁଳ, ସହଦେବଙ୍କର ମଧ ମାତା ଏବଂ ଆଉ ଜଣକର ମଧ ।

କର୍ଣ୍ଣ: ଆଉ ଜଣକର ? କିଏ ସିଏ ?

କୁନ୍ତୀ: କର୍ଣ୍ଣ ହିଁ । ଜ୍ୟେଷ୍ଠ ସିଏ । ଶ୍ରେଷ୍ଠ ସିଏ । ଅତୁଳନୀୟ ଅର୍ଜୁନପରି ସାହସୀ ଏବଂ ଯୁଧିଷ୍ଠିର ପରି ଧର୍ମାତ୍ମା ।

କର୍ଣ୍ଣ: ଦେବୀ ! ମୋ ମନରେ ଗୋଟାଏ ପ୍ରଶ୍ନବାଚୀ ଉଠି ମୋ ଆଗରେ ଠିଆ ହୋଇଯାଉଛି । ଯଦି ସେ ଏକାଧାରରେ ବୀର ଓ ଧର୍ମାତ୍ମା ଦୁନିଆ ଆଗରେ ତାର ପରିଚୟ କେମିତି ନାହିଁ ? ଆପଣଙ୍କ ପ୍ରଥମପୁତ୍ର ଏତେ ଉଜ୍ଜ୍ୱଳ ହୋଇଥିଲେ ସୁଦ୍ଧା ଏତେ ନିଷ୍ପ୍ରଭ କାହିଁକି ? ତାର ପରିଚୟ ଏତେ ପ୍ରଚ୍ଛନ୍ନ କାହିଁକି ?

କୁନ୍ତୀ: ମୁଁ ହିଁ ତାକୁ ଏ ପୃଥିବୀରେ ଅପରିଚିତ କରି ରଖିଛି । ତା ପରିଚୟକୁ ପ୍ରଚ୍ଛନ୍ନ କରି ରଖିଚି । ଯୋଉ ଦିନ ସମାଜ ଆଗରେ ସେ ସ୍ୱୀକୃତି ପାଇବ ସିଏ ଏ ପୃଥିବୀର ଅନ୍ୟାୟ ଆଗରେ ଅସ୍ତ୍ରତୋଳି ଦଣ୍ଡାୟମାନ ହେବ ।

କର୍ଣ୍ଣ: ତା'ମାନେ ମୋ ଆଗରେ ଦୁଇଜଣ ପ୍ରତିଦ୍ୱନ୍ଦୀ । ଜଣେ ଅର୍ଜୁନ ଓ ଅନ୍ୟ ଜଣେ, ଯାହାର ନାମ ମଧ୍ୟ ଏ ପର୍ଯ୍ୟନ୍ତ ଜାଣିନାହିଁ ।

କୁନ୍ତୀ: ଖୁବ୍ ଶୀଘ୍ର ମୋର ତା ସାଙ୍ଗରେ ଦେଖାହେବ କର୍ଣ୍ଣ । ସେତିକି ବେଳେ ଜାଣିବ – ତୁମେ ଆଉ ତୁମର ପ୍ରତିଦ୍ୱନ୍ଦୀ କିପରି ଜଣେ ଲୋକ । କେମିତି ତୁମରି ପରି ସାହାସୀ, ବୁଦ୍ଧିମାନ, ବୀର୍ଯ୍ୟବାନ, ଶକ୍ତିମାନ, ହୃଦୟବାନ ଏବଂ ଶତ୍ରୁମାନଙ୍କ ପାଇଁ ଭୟଙ୍କର ପୁରୁ ବଂଶର ଜ୍ୟେଷ୍ଠ ପୁତ୍ର – ଯାହାର ନାମ କର୍ଣ୍ଣ ! ହେ କର୍ଣ୍ଣ ! ତୁମେ... ତୁମେ ମୋର ପୁତ୍ର ! ଜ୍ୟେଷ୍ଠ ପୁତ୍ର !

କର୍ଣ୍ଣ: ଦେବୀ ! ମୁଁ ସାରଥି ଅଧିରଥଙ୍କର ପୁତ୍ର । ଅଧିରଥ ବୈକର୍ତ୍ତନ । ମାତା ମୋର ରାଧା । ତାରି କୋଳରେ ମାଟିଧୂଳିରେ ମୁଁ ବଡ଼ ହୋଇଛି ।

କୁନ୍ତୀ: ନା-ନା ! ଅନ୍ଧାର ଭିତରେ ରୁହନା କର୍ଣ୍ଣ ! ନିଜର ପରିଚୟ ଜାଣ । ଚିହ୍ନ ନିଜକୁ ଭଲଭାବେ ! ମୋଠାରୁ ଶୁଣ ତୁମର ପରିଚୟ । ମୁଁ କୁନ୍ତୀ ତୁମର ମା ! ମୋର ଗର୍ଭ ତୁମର ପ୍ରଥମ ପୃଥିବୀର ସ୍ପର୍ଶ । ମୋ ଖାଦ୍ୟରୁ ତୁମେ ଜୀବନୀ ଶକ୍ତି ପାଇଛ । ତୁମେ ଏଇ କୁନ୍ତୀର ପୁତ୍ର ! ସୂର୍ଯ୍ୟଦେବଙ୍କର ପୁତ୍ର ! (କର୍ଣ୍ଣ ନିଶ୍ଚୁପ ରହିଲେ । କୁନ୍ତୀ ତାଙ୍କ ପାଖକୁ ଆଗେଇ ଗଲେ) ତୁମେ ନୀରବ କାହିଁକି କର୍ଣ୍ଣ ? ମୋ କଥାରେ ତୁମର ବିଶ୍ୱାସ ହେଉନି ?

କର୍ଣ୍ଣ: କେବେ କାହାଠୁ ଏମିତି ଗୋଟେ ସମ୍ବାଦ ଶୁଣିଛି ମନେ ପଡୁନି ମୋର । ଭାବି ଦେଇଚି ଏଇଟା ଗୋଟେ କାହାଣୀ... ଭାବି ଦେଇଚି ଏଇଟା ଗୋଟେ କାଳ୍ପନିକ କାହାଣୀ । ହସ୍ତିନାର ରାଜମାତା ମୋର ଜନ୍ମଦାତ୍ରୀ... ? ସୂର୍ଯ୍ୟଦେବ ମୋର ପିତା ? ଏହା କଣ ସତ୍ୟ ହୋଇପାରେ ?

କୁନ୍ତୀ: ତୁ ଜାଣିଥିଲୁ ଏକଥା ? ଆଗରୁ କିଏ କହିଚି ଏ କଥା ? ତାହେଲେ ତୁ ମୋ ପାଖକୁ ଆସି ଏକଥାର ସତ୍ୟାସତ୍ୟ ବୁଝିନେଲୁନି କେମିତି ? କେମିତି ଦୂରେଇ

ରଖିଲୁ ନିଜକୁ ? ଯଦି ସ୍ୱପ୍ନ ପରି ଲାଗିଲାତତେ ଏଇ କାହାଣୀ, ତୋ ଘରକୁ ଫେରିଆସିଲୁନି କାହିଁକି ?

କର୍ଣ୍ଣ: ଘର ? ମୋ ଘର କେଉଁଠି ?

କୁନ୍ତୀ: ରାଜା କୁନ୍ତଭୋଜଙ୍କ ରାଜପ୍ରାସାଦ !

କର୍ଣ୍ଣ: ରାଜପ୍ରାସାଦ ? (ଖୁବ୍ ଜୋର୍‌ରେ ହସିଲେ କର୍ଣ୍ଣ) କୁନ୍ତୀ ମୋର ଜନନୀ (ହାଃହାଃହାଃ) ହସ୍ତିନାର ରାଜମାତା ମୋର ଜନନୀ ! ଏହା ସଂପୂର୍ଣ୍ଣ ଅବିଶ୍ୱାସ୍ୟ ଦେବୀ ! ମୁଁ କିପରି ସୂର୍ଯ୍ୟଦେବଙ୍କର ସଂତାନ ହେଲି ?

କୁନ୍ତୀ: ବିଶ୍ୱାସ କରିବାକୁ ପଡ଼ିବ କର୍ଣ୍ଣ । କେବଳ ମା ହିଁ ଜାଣେ ସଂତାନର ପିତା କିଏ ।

କର୍ଣ୍ଣ: ମୁଁ କିପରି ବିଶ୍ୱାସ କରିବି ଦେବୀ ମାନବୀ ହୋଇ ତମେ କିପରି ସହ୍ୟ କଲ ସୂର୍ଯ୍ୟଙ୍କର ତେଜପୁଞ୍ଜ କୁ ?

କୁନ୍ତୀ: ତାହେଲେ ଶୁଣ, ସବୁ କଥା ଶୁଣ ।

*(କୁନ୍ତୀ ଫେରିଆସିଲେ ମଧ୍ୟ ମଂଚର ବାମପଟେ ଟଂଗା ହୋଇଥିବା ଗୋଟିଏ ଲାଲ ରଂଗର ଓଢ଼ଣୀ ପାଖକୁ । ଓଢ଼ଣୀଟି ଘୋଡ଼େଇ ଦେଲେ ମୁହଁରେ ଏବଂ ବର୍ଣ୍ଣନା କଲେ । ବର୍ଣ୍ଣନା କଲାବେଳେ ତାଙ୍କ ଚରିତ୍ର ରୂପାନ୍ତରିତ ହୋଇଗଲା ଯୌବନର ଆଦ୍ୟ ଅବସ୍ଥାକୁ । ଆବହ ସଂଗୀତ ଓ ଆଲୋକରେ ପରିବର୍ତ୍ତନ)*

କୁନ୍ତୀ: ମୁଁ ସେତେବେଳେ ସଦ୍ୟଯୌବନା ।। କୁମାରୀତ୍ୱ ରୁ ସଦ୍ୟ ମୁକ୍ତି ପାଇଛି । ପଥର ଫଟେଇ ଝରଣା ଯେମିତି ବହିଯାଏ ନିର୍ଝର ହେଇ... ମୁଁ ସେମିତି ବନ ଝରଣା ପରି ବନ ପ୍ରାନ୍ତର ନମାନି, ପଥରର ବାଧା ବଂଧନ ନମାନି ଖାଲି ବହିଯାଉଛି । ସେତେବେଳେ ଋଷି ଦୁର୍ବାସା ଆସିଲେ ଆମ ଅତିଥି ଶାଳାକୁ । ମୋର ସେବାରେ ସଂତୁଷ୍ଟ ହେଲେ । ଗୂଢ଼ ଆହ୍ୱାନ ମଂତ୍ର ଦେଲେ । ସେଇଟା ବଶୀକରଣ ମଂତ୍ର । ମଂତ୍ର ପଢ଼ିଲେ ଯେକୌଣସି ଦେବତା ବଶୀଭୂତ ହୋଇ ପାଖକୁ ଆସିବେ । ଗୂଢ଼ମଂତ୍ର । ଦୁର୍ବାସା ମତେ ସାବଧାନ କରେଇ ଦେଇଥିଲେ । କୁମାରୀ ଅବସ୍ଥାରେ କେବେ ସେଇ ମଂତ୍ର ପଢ଼ିବୁ ନାଇଁ ବାହାହେଲା ପରେ ସ୍ୱାମୀର ଆଜ୍ଞା ପ୍ରକାରରେ ପଢ଼ିବୁ... ନିକାଞ୍ଚନ ସ୍ଥାନକୁ ଯାଇ ପଢ଼ିବୁ.. ଏମିତି ବହୁତ କିଛି । (ଖୁବ୍ ଜୋର୍‌ରେ ହସିଲେ କୁନ୍ତୀ । ଦୁଷ୍ଟାମୀରେ ହସ) ସଦ୍ୟ ଯୌବନା ତରୁଣୀ ମୁଁ । ଦୁର୍ବାସାଙ୍କ କଥା କିଛି ମାନିଲି ନାଇଁ । ଦେହ ଆଉ ମନରେ ଉସୃଙ୍ଖଳକାମନା, ଅଥଚ ରତିଶାସ୍ତ୍ର ଅନଭିଜ୍ଞା ମୁଁ... ଅବଶ୍ୟ ଜାଣିବାକୁ ଇଚ୍ଛା ଥିଲା ଏ ଦେହରେ ପୁରୁଷର ଦେହ

ବାଜିଲେ କଣ ହୁଏ... ମଂତ୍ରଟା ବୋଲି ଦେଲି ସୂର୍ଯ୍ୟଦେବଙ୍କର ଉଦ୍ଦେଶ୍ୟରେ ।

କୁନ୍ତୀ: କିଛି ସମୟ ଗଲା । ମୁଁ ଚାହିଁଥିଲି ସୂର୍ଯ୍ୟଦେବଙ୍କୁ ଏବଂ ସୂର୍ଯ୍ୟଦେବ ତାଙ୍କର କୋମଳତମ ରଶ୍ମୀକୁ ପ୍ରବେଶ କରାଇଲେ ମୋ ଭିତରକୁ । *(ପ୍ରବେଶ କଲେ ପାଞ୍ଚଜଣ ସୂତ୍ରଧର । କୁନ୍ତୀଙ୍କର ଚାରିପଟେ ସେମାନେ ଚକ୍ରାକାରରେ ଘୁରି ବୁଲିଲେ)*

ସମବେତ ସ୍ୱର: ତରୁଣ ସମ୍ରାଟ ସୂର୍ଯ୍ୟଙ୍କର ରକ୍ତାଭ ଆଲିଙ୍ଗନରେ ମୁଁ ଅଚେତନକ ଆଖିବୁଜି ଦେଲି ଏବଂ ଉଠିଲାବେଳକୁ ମୁଁ ଅନ୍ତସତ୍ତ୍ୱା । ଆକାଶ ସାରା ତାଙ୍କର ଦ୍ୟୁତି *(କୁନ୍ତୀଙ୍କର ଚାରିପଟେ ଘୁରୁଥିବା ସୂତ୍ରଧରମାନେ ଚାଲିଗଲେ ଅନ୍ତରାଳକୁ । କେନ୍ଦ୍ର ମଂଚରେ ସ୍ୱତଂତ୍ର ଅରୁଣ ଆଲୋକରେ ରତିକ୍ଳାନ୍ତ ମୁଦ୍ରାରେ କୁନ୍ତୀ)*

କୁନ୍ତୀ: ଏବଂ ତୁମେ ଜନ୍ମ ହେଲ କର୍ଣ୍ଣ । ତୁମେ ସେଇ ସୂର୍ଯ୍ୟପୁତ୍ର ।

କର୍ଣ୍ଣ: ମା ! ମା ମୋର !

କୁନ୍ତୀ: ଡାକ ! ଆଉଥରେ ଡାକ ମତେ ମା ବୋଲି । ଏ ପୃଥିବୀ ପ୍ରତିଧ୍ୱନିତ ହେଉ ତୋର ମା ଡାକରେ । ଗର୍ବରେ ମୋର ଛାତି ଆଉଥରେ ଫୁଲି ଉଠୁ ଶୁଣି ତୋର କଣ୍ଠର ସ୍ୱର !

କର୍ଣ୍ଣ: କି ଆଶ୍ଚର୍ଯ୍ୟ ଭ୍ରୁଣ ସହ ମୋର ଏ ଶରୀର ସଂପର୍କ । ସେଇଠି ଟିକିଏ ଠିଆ ହୁଅ ମା ! ମୁଁ ଆଖି ପୁରେଇ ଦେଖି ନେବି ତୁମକୁ । ଯାର ଓଠ ମୋ ଓଠ ପରି... ଯା ଦେହର ରଂଗ ମୋ ରଂଗ ପରି... ଯାର ନିଶ୍ୱାସ ମୋର ନିଶ୍ୱାସ ପରି... ମନର ଦର୍ପଣରେ ମୁଁ ତମର ମୁହଁଟାକୁ ଦେଖିବି ମାତା ! ଯେତେବେଳେ ଗୁରୁମାନେ ମୁଁ କ୍ଷତ୍ରିୟ ନୁହେଁ ବୋଲି ଅସ୍ତ୍ରଶିକ୍ଷା ଦେବେ ନାହିଁ, ମୁଁ କହିବି ମୁଁ ଅଧିରଥ ବୈକର୍ତ୍ତନ ନୁହେ, କର୍ଣ୍ଣ ! ସ୍ୱୟଂବର ସଭାର ଯେତେବେଳେ ରାଜାମାନେ କହିବେ ମାଛ ଆଖିକୁ ଲାଖ ବିନ୍ଧିବାକୁ ତୁ ଅଯୋଗ୍ୟ ମୁଁ କହିବି.. ମୁଁ ଅଧିରଥ ବୈକର୍ତ୍ତନ ନୁହେ... ମହାରାଣୀ କୁନ୍ତୀଙ୍କ ସଂତାନ ! ଅନେକ ଗ୍ଲାନିରୁ ମତେ ମୁକ୍ତିଦେଲେ ମାତା କିନ୍ତୁ ମୋ ଜନ୍ମର କଣ କାରଣ ଥିଲା ମାତା ? ଗୋଟାଏ ନାରୀ ପରୀକ୍ଷା କରୁଥିଲା ମାତୃତ୍ୱ ପାଇବା ସଂଭବ କି ନୁହେଁ... ଆଉ ଅକସ୍ମାତ୍ ଗୋଟେ ଦୁର୍ଘଟଣା ଭଳି ମୁଁ ଜନ୍ମ ହେଇଥିଲି । ମା ମୋର ! ତୁମର ରକ୍ତ ମୋ ଦେହରେ ପ୍ରବାହିତ । ତୁମର ଖାଦ୍ୟରେ ମୋ ଦେହର ପଞ୍ଚଭୂତ ଗଢ଼ା... ତୁମ ନିଶ୍ୱାସରେ ମୁଁ ନିଶ୍ୱାସ ନେଉଛି । ମା ମୋର ! ଗୋଟିଏ ସତ୍ତା ଦୁଇଟି ଦେହରେ... ତଥାପି ଛାଇ

ନଥିବା ଗୋଟେ ସ୍ରୋତରେ ଭସେଇ ଦେଲ ମତେ... ଭାସମାନ ଗୋଟିଏ ମଂଜୁଷାରେ ? କାହିଁକି ମାତା ? ସଭାରେ, ସ୍ୱୟଂବରରେ, ରଣଭୂମିରେ କାହିଁକି ସେମାନେ ଲୋଡ଼ିଲେ ସେଇ ଅପାଙ୍କ୍ତେୟ ଜାତିର ଇତିହାସ ? ମୁଁ ତ ଚାହିଁ ନଥିଲି ଜନ୍ମ ହେବାକୁ ନିର୍ଦ୍ଦିଷ୍ଟ ଜାତିରେ ! ତୁମେ ଚାହିଁଥିଲ ଜନନୀ ହେବାକୁ ଏବଂ ଦେବତାମାନଙ୍କ ସଂଗ ପାଇବାକୁ । ଜାତି ମୋର ଦୈବାୟତ । ତଥାପି କାହିଁକି ମୁଁ ଏତେ ଅର୍ବାଚୀନ ? କାହିଁକି ମୋର ପରିଚୟ ସଦା ଭାସମାନ ?

କୁନ୍ତୀ: ମୁଁ ଦାୟୀ କର୍ଣ୍ଣ ! କ୍ଷତ୍ରିୟ ପୋଷାକରେ ସଜେଇ ଦେଇଥିଲି ତତେ । ସାଙ୍ଗରେ ଦେଇଥିଲି ମଣି, ମୁକ୍ତା, ବୈଦୁର୍ଯ୍ୟ ଓ ଆୟ ଅଳଂକାର ଆଉ ସମୟର ସ୍ରୋତ ଭିତରେ ଭସେଇ ଦେଲି ତତେ ଅନିର୍ଦ୍ଦିଷ୍ଟ ଭବିଷ୍ୟ ଆଡ଼କୁ ।

କର୍ଣ୍ଣ: କାହିଁକି ପାଣ୍ଡୁପତ୍ନୀ ? କାହିଁକି ମୋ ଉପରେ ଏ ଅତ୍ୟାଚାର କଲ ? କାହିଁକି ?

କୁନ୍ତୀ: ଲଜ୍ଜାରେ । କଳଂକର ଭୟରେ । ସଂହିତା ଯୁଗ ଚାଲିଯାଇଥିଲା ଓ ତ୍ରେତୟା ଚାଲିଯାଇଥିଲା । ମାତୃକୈନ୍ଦ୍ରିକ ସମାଜ ଆଉ ନଥିଲା । ନିଜ ଇଚ୍ଛାରେ ସ୍ୱାମୀ ବାଛିବାର ଅଧିକାର, କୁମାରୀ ବୟସରେ କାନୀନ ମାତା ହେବାର ଅଧିକାର ଛଡ଼େଇ ନେଇଥିଲା ଦ୍ୱାପର ଯୁଗ । ସେଇଥିପାଇଁ ଅଶ୍ୱନଦୀରେ ଭସେଇ ଦେଇଥିଲି ତତେ !

କର୍ଣ୍ଣ: ଅଶ୍ୱନଦୀରେ ଭସେଇ ଦେଇଥିଲ ?

କୁନ୍ତୀ: ସମୟ ନଦୀର ଜୁଆରରେ କର୍ଣ୍ଣ ! ଆଶା କରିଥିଲି ତୋର ମର୍ଯ୍ୟାଦା ବହିଯିବ ସ୍ଥାନରୁ ସ୍ଥାନାନ୍ତରକୁ, କାଳରୁ କାଳାନ୍ତରକୁ ।

କର୍ଣ୍ଣ: ଆଉ ଆଜି ! ପୁତ୍ର ବୋଲି ସଂବୋଧନ କରୁଛ ମତେ ?

କୁନ୍ତୀ: ଯୁଗେ ଯୁଗେ ପୁତ୍ରର ଶରୀରକୁ ମାତା ନିଷ୍କାସନ କରିଦେଇଥାଏ । ଏଇଟା ପ୍ରକୃତିର ନିୟମ ! ବ୍ରାହ୍ମାଙ୍କର ନିୟମ । କିନ୍ତୁ .. କିନ୍ତୁ ପୁତ୍ର ! ବାତ୍ସଲ୍ୟର ସେଇ ଅନୁରାଗ ଅନ୍ତଃସ୍ରୋତ ହୋଇ ବହୁଥାଏ ହୃଦୟ ଭିତରେ ଦୂରତ୍ୱ ଥାଇ ମଧ୍ୟ ପୁତ୍ର ସତତ ମାତାର ।

କର୍ଣ୍ଣ: ସେ ଦୂରତ୍ୱକୁ ଧରି ରଖି ପାରିଲନି ? କାହିଁକି ଆସିଲ ମୋ ନିକଟକୁ ? କାହିଁକି ଦଣ୍ଡାୟମାନ ହେଲ ମୋ ସମ୍ମୁଖରେ ? ଲଜ୍ଜା ଲାଗିଲାନି ତମକୁ ?

କୁନ୍ତୀ: ଦେ ! ଗାଳି ଦେ ! ଆଘାତ କର ! ଆହୁରି କଠିନ ଶବ୍ଦ ପ୍ରୟୋଗ କର ! ତୋ ପରାଭବରେ ହୃଦୟ ମୋର ବିଦୀର୍ଣ୍ଣ ହୋଇଯାଉ । ତୋ ମନରୁ ବିଦ୍ରୋହର ନିଆଁ ପ୍ରଶମିତ ହେବା ପର୍ଯ୍ୟନ୍ତ । ମୋ ଆଖିରୁ ଶେଷ ଅଶ୍ରୁ ନିର୍ଗତ

ହେଲା ପର୍ଯ୍ୟନ୍ତ (ଆଣ୍ଠୁ ମାଡ଼ି ବସିପଡ଼ି) କିନ୍ତୁ କର୍ଣ୍ଣ! ମୋ ପାଖକୁ ଆ! ଆ ମୋ କୋଳକୁ । ମୋ ଲୁହରେ ତୁ ମୋର ଜ୍ୟେଷ୍ଠ ପୁତ୍ରଭାବେ ଅଭିଷିକ୍ତ ହୁଅ! ଆ-ମତେ ତୋର ସ୍ପର୍ଶ ଦେ!

କର୍ଣ୍ଣ: (ହାତ ଯୋଡ଼ି ମନା କଲେ ଏବଂ ଘୁଞ୍ଚିଗଲେ, ଦୂରରେ ଯାଇ ଠିଆ ହେଲେ)

କୁନ୍ତୀ: ପ୍ରତ୍ୟାଖ୍ୟାନ? ଅପରାଧ କରିଛି ମୁଁ କିନ୍ତୁ ଅପରାଧର କଣ କ୍ଷମା ନାହିଁ? ପାପର କଣ ପ୍ରାୟଶ୍ଚିତ୍ତ ନାହିଁ?

କର୍ଣ୍ଣ: ନା, ପ୍ରାୟଶ୍ଚିତ୍ତ ଅର୍ଥହୀନ। କ୍ଷମାର ମଧ୍ୟ କୌଣସି ଅର୍ଥ ନାହିଁ। ହାତ ବଢ଼େଇଲେବି ସ୍ପର୍ଶ ମୁଁ ପାଇବିନି।

କୁନ୍ତୀ: ଭୁଲ। ସୂର୍ଯ୍ୟଦେବଙ୍କର ବୀର୍ଯ୍ୟରୁ ତୋର ଜନ୍ମ। ମୁଁ ଜାଣିଥିଲି ତୁ ଦିନେ ଏ ପୃଥିବୀର ଶ୍ରେଷ୍ଠବୀର ହେବୁ। ଆ ତୁ ହସ୍ତିନାକୁ। ଜ୍ୟେଷ୍ଠପୁତ୍ରର ଅଧିକାରରେ ଛଡ଼େଇନେ' ହସ୍ତିନାର ସିଂହାସନ। ଏ ସୁତପୁତ୍ରର ଛଦ୍ମବେଶ ଛାଡ଼ିଦେ ଅଧିରଥ ବୈକର୍ତ୍ତନ! ରୂପାନ୍ତରିତ ହୋଇଯା! ହୋଇଯା! କୁନ୍ତୀପୁତ୍ର କର୍ଣ୍ଣ। ଇଂଦ୍ରପ୍ରସ୍ଥର ସିଂହାସନ ତୋ ପାଇଁ ଅପେକ୍ଷା କରିଛି। ରାଜବଂଶର ଏ ସଂଧିକ୍ଷଣରେ, ଭରତବଂଶର ସଂତାନମାନେ ଯୋଉ ସଂଧିକ୍ଷଣରେ ଅସ୍ଥିର ଏବଂ ଟଳମଳ.. ସେଇ ଅବସ୍ଥାରେ ତୋର ଅସଲ ପରିଚୟ ଦେଇ ତୁ ଆ କର୍ଣ୍ଣ! ଦୁର୍ଯ୍ୟୋଧନର ଦାନରେ ମିଳିଥିବା ଗୋଟେ କ୍ଷୁଦ୍ରରାଜ୍ୟର ସାମନ୍ତ ହୋଇ ତୁ କାହିଁକି ଜୀବନ କଟେଇବୁ?

କର୍ଣ୍ଣ: ଓ! ଆଜି ଦରକାର ପଡ଼ିଲା ବୋଲି ନଦୀରେ ଭସେଇଦେଇଥିବା ସେଇ ତ୍ୟାଜ୍ୟ ପୁତ୍ରଟାକୁ ଡ଼ାକିବାକୁ ଆସିଛ? ଆସିଚ ପାଣ୍ଡବପୁତ୍ର ଅର୍ଜୁନର ଆୟୁଷ ବଢ଼େଇବା ପାଇଁ? ଆସିଛ ପାଣ୍ଡବର ଶ୍ରୀ ବୃଦ୍ଧି ଏବଂ ଅର୍ଜୁନର ଆୟୁ ଭିକ୍ଷା କରିବାପାଇଁ ମୋ ଠାରୁ? ସେଇଥିପାଇଁ ମାତୃତ୍ୱର ଏ ମୋହ ଦେଖାଇ ପାଣ୍ଡୁପତ୍ନୀ ମୋପାଖକୁ ଆସିଛନ୍ତି? ହା ହା ହା ହା ହା-

କୁନ୍ତୀ: ମୁଁ ତୋ ପାଖରେ କୌଣସି କଥା ଲୁଚେଇବି ନାହିଁ କର୍ଣ୍ଣ। ଚକ୍ରାନ୍ତ କରି ଦୁର୍ଯ୍ୟୋଧନ ହସ୍ତିନାର ସିଂହାସନରେ ବସିଛି। ପାଞ୍ଚ ପାଣ୍ଡବଙ୍କ ପାଇଁ ପାଞ୍ଚଖଣ୍ଡ ଗାଁ ଦେବାକୁ ମଧ୍ୟ ସେ ନାରାଜ। ଏପରି ଅବସ୍ଥାରେ ପାଣ୍ଡବମାନେ ଯୁଦ୍ଧ କରି ନିଜର ସିଂହାସନ ଅଧିକାର କରିବାକୁ ଚାହୁଁଛନ୍ତି। ମଂତ୍ରଣା ସଭାରେ ସବୁ ବୟୋଜ୍ୟେଷ୍ଠ ମାନେ ମତ ଦେଲେ ଯୁଦ୍ଧ ହିଁ ସବୁ ସମସ୍ୟାର ସମାଧାନ କରିବ। ସେଇଥି ପାଇଁ କର୍ଣ୍ଣ, ମୁଁ ପାଣ୍ଡବମାନଙ୍କର ଦୂତୀ ହୋଇ ତୋ ପାଖକୁ ଆସିଛି। ଆସିଛି ରକ୍ତର ସଂପର୍କ ଅଛି ବୋଲି। ମୋ ହୃଦୟ କହିଲା

ତୋ ପାଖକୁ ଯାଇ ତୋର ଆଶ୍ରୟ ମାଗିବା ପାଇଁ ।

କର୍ଣ୍ଣ: ଯୁଦ୍ଧରେ ବିଜୟଲାଭ କରିବାର ସ୍ୱପ୍ନ ନେଇ ! ଆଉ ସେ ଦିନ... ଯୋଉ ଦିନ କିଶୋର ବୟସର ଏହି ଅଧିରଥ ବୈକର୍ତ୍ତନ ଆସି ଯୁଦ୍ଧ ପ୍ରତିଯୋଗୀତାରେ ଭାଗନେବା ପାଇଁ ହସ୍ତିନାପ୍ରାସାଦର ପ୍ରାଙ୍ଗଣକୁ ଆସିଥିଲା... କୃପାଚାର୍ଯ୍ୟ ମୋର ପରିବାର ଓ ପିତାମାତାଙ୍କ ସଂପର୍କରେ ଜାଣିବାକୁ ଚାହିଁଲେ ଏବଂ ସଭାର ଅଭିଜାତ ମାନେ ମୋ କଥା ଶୁଣି ହସି ଉଠିଥିଲେ ।

*(ପ୍ରବେଶ କଲେ ସୂତ୍ରଧର ଗଣ । କେନ୍ଦ୍ର ମଂଚରେ ଚକ୍ରାକାରରେ ଘୁରି ଘୁରି ଉଚ୍ଚସ୍ୱରରେ ହସିଲେ)*

କର୍ଣ୍ଣ: ଲଜ୍ଜାରେ ମୁହଁତଳକୁ କରି ହଜାର ହଜାର ଲୋକଙ୍କ ସାମ୍ନାରେ ମୁଁ ଖସି ଆସିଲି ।

କୁନ୍ତୀ: ମୁଁ ସେଇ ପ୍ରତିଯୋଗୀତା ପ୍ରାଙ୍ଗଣରେ ଉପସ୍ଥିତଥିଲି କର୍ଣ୍ଣ । ତୁ ଯେତେବେଳେ ସିଂହଭଳି ପଶି ଆସିଲୁ ଲୋକେ ଚୁପଚାପ୍ କଥାବାର୍ତ୍ତା ହେଲେ । କହିଲେ "ଇଏ ହେଉଛନ୍ତି କର୍ଣ୍ଣ...କର୍ଣ୍ଣ ! !"

କର୍ଣ୍ଣ: ଓଃ ! କି ଲଜ୍ଜା । ଶୂଦ୍ର ଜାତିର ବୋଲି ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର କି ଘୃଣା ! ! ଅଥଚ ମୁଁ ମାତା କୁନ୍ତୀର ପ୍ରଥମ ସଂତାନ ?

*(ସୂତ୍ରଧରମାନଙ୍କର ଚକ୍ରାଗତ ବ୍ୟୂହ ଭିତରୁ ବାହାରି ଆସି କୁନ୍ତୀ କହିଲେ)*

କୁନ୍ତୀ: ମୁଁ ଦେଖିଛି ତୋର ବଳିଷ୍ଠପଦପାତ, ତୋର ଗର୍ବୋନ୍ନତ ମଥା... ମୋ ଆଖି ସେଦିନ ଧନ୍ୟ ହୋଇଗଲାରେ ଧନ... ! ହୃଦୟ ଉଦବେଳିତ ହୋଇଥିଲା ! ଲାଗିଲା ତୁ ଆଉ କିଏ ନୁହ... ପୁତ୍ର ମୋର... କର୍ଣ୍ଣ ମୋର ।

କର୍ଣ୍ଣ: କିନ୍ତୁ ହେ ପାଣ୍ଡୁପତ୍ନୀ ହସ୍ତିନାର ରାଣୀ । ତମେ ନୀରବ ରହିଥିଲ । କିଛି କହିଲ ନାହିଁ । ମୁଁ କାହାର ପୁତ୍ର ତମେ ଜାଣିଥିଲ ରାଣୀ । କିନ୍ତୁ କୃପାଚାର୍ଯ୍ୟଙ୍କ ଆଗରେ ତମେ ଯୋଉ ମୌନ ହୋଇ ବସିଗଲ । ସେଇ ନୀରବତା ମୋର ପରିଚୟକୁ ଅତି ହୀନିମାନ କରିଦେଲା ମାତା ! ମତେ ଏବେ ଲାଗୁଚି, ତମେ ଯେ ମତେ ଅଶ୍ୱନଦୀରେ ଭସେଇ ଦେଇଥିଲ । ସେଇ ଭାସମାନ ଅବସ୍ଥାରେ ହିଁ ମୁଁ ଅଛି ।ଏ ପର୍ଯ୍ୟନ୍ତ ଭାସୁଛି ପରିଚୟହୀନ ଏକ ଶୁଦ୍ରନଦୀର ବନ୍ୟାରେ !

କୁନ୍ତୀ: ନୀରବରେ ମୁଁ ସବୁ ଦେଖୁଥିଲି । ତାପରେ ପାଖକୁ ଆସିଲି । ଦେଖିଲି ତୋ ବାହୁରେ କର୍ଣ୍ଣରେ କୁଣ୍ଡଳ ଓ କବଚ । ମନେପଡ଼ିଗଲା ମୋର ମଂଜୁଷାରେ ଭସେଇ ଦେଇଥିବା ତୋର ରୂପ । ଜାଣି ପାରିଲି ତୁମୋର ପୁତ୍ର ସେଇ

କର୍ଣ୍ଣ । ତାପରେ ମୁଁ ମୂର୍ଚ୍ଛିତା ହୋଇ ପଡ଼ିଲି କର୍ଣ୍ଣ ! ଆତ୍ମ ଧିକ୍କାରରେ, ଅସହ୍ୟ ପାପବୋଧରେ ମୁଁ ମୂର୍ଚ୍ଛା ହେଇଗଲି । (ମୂର୍ଚ୍ଛା ଅଭିନୟ)

*(କୁନ୍ତୀ ଏଇ ସଂଳାପ କହିଲାବେଳେ ସୂତ୍ରଧର ମାନେ ମଂଚ ଉପରେ ଅଛନ୍ତି । ସେଇ ମଂଚ ଉପରେ ଥିବା ଧନୁ ଓ ଶର ବାହାର କରି କର୍ଣ୍ଣ ସାଙ୍ଗରେ ଯୁଦ୍ଧ କରିବା ମୁଦ୍ରାରେ ଅଛନ୍ତି ଏବଂ କର୍ଣ୍ଣ ମଧ ଧନୁଶର ଯୁଦ୍ଧ ମୁଦ୍ରାରେ ମଂଚ ଉପରେ ସେମାନଙ୍କ ସାଙ୍ଗେ ଯୁଦ୍ଧ କରୁଛନ୍ତି । କୁନ୍ତୀ ମୂର୍ଚ୍ଛା ହେଲେ । ତଳେ ବସି ପଡ଼ିଲେ ଡ଼ାହାଣପଟ ନିମ୍ନ ମଂଚରେ)*

କର୍ଣ୍ଣ: କିନ୍ତୁ ତମେ ନୀରବ ରହିଲ ମାତା, ନୀରବ ରହିଲ । ଭୟଙ୍କର ସେ ନୀରବତା । ଏକମାତ୍ର ମା ଜାଣେ ପୁତ୍ରର ପିତା କିଏ... ପିତାର ଜାତି କଣ । କିନ୍ତୁ ତୁମେ ସେ ରାଜ ସଭାରେ ନୀରବ ଥିଲ ।

*(କର୍ଣ୍ଣ ଆସିଲେ । ଗୋଟେ ପିତ୍ତଳ ଗିଳାସରେ (ପାଣି ନଥିଲା) ପିଇବାକୁ ପାଣି ଦେବାର ଅଭିନୟ କଲେ । କ୍ଲାନ୍ତ ଓ ମୂର୍ଚ୍ଛିତ । କୁନ୍ତୀ ଗିଳାସ ନେଲେ)*

କୁନ୍ତୀ: ସେଇଟା ମୋର ଭୁଲ । ସେ ଭୁଲ କୁ ବର୍ତ୍ତମାନ ସଂଶୋଧନ କରିବାକୁ ଋହେଁ । ତୁ ମତେ ସାହାଯ୍ୟ କର କର୍ଣ୍ଣ । ମତେ ଭାବିବାକୁ ଦେ... ସେ ସତ୍ୟକୁ ସ୍ୱୀକାର କରିବା ପାଇଁ ସାହସ ଦେ । ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଜାଣନ୍ତୁ... ସେମାନଙ୍କ ଭଳି ତୁ ମଧ ମୋର । କେବଳ ମୋର । ଜ୍ୟେଷ୍ଠ ଆଉ ଶ୍ରେଷ୍ଠ ।

କର୍ଣ୍ଣ: କ୍ଷମା କର ମାତା । ମୁଁ କାହାର ନୁହେଁ ମୁଁ କେବଳ ମୁଁ । ଏକମାତ୍ର ମୋର ମୁଁ । ମୁଁ ଧର୍ମରେ ବିଶ୍ୱାସ କରେନା । ମାନବିକତା ମୋର ଧର୍ମ । ଯଦି ପାଣ୍ଡବମାନେ ମୋର ଭାଇ, ତାହେଲେ କୌରବମାନେ ମଧ ମୋର ଭାଇ ।

କୁନ୍ତୀ: (କ୍ଷୁବ୍ଧ, ଅଥଚ ହସିଲେ) ତୁ ଦାର୍ଶନିକମାନଙ୍କ ପରି କଥା କହୁଚୁ କର୍ଣ୍ଣ । ତୋର ଭାଗ୍ୟ ଆଜି ଦ୍ୱିଧାଗ୍ରସ୍ତ । ଗୋଟାଏ ପଟେ ପାଣ୍ଡବମାନେ... ନିଷ୍ପାପ ଓ ନିରାପରାଧ । ପାଞ୍ଚଜଣ ଯାକ ନିଷ୍ଠାବାନ ଓ ସଚ୍ଚୋଟ... ଅନ୍ୟପଟେ କୌରବମାନେ ପାପୀ ଓ ଅଧର୍ମୀ । ତୁ ସ୍ଥିର କରିବୁ । ତୁହିଁ ନିଷ୍ପତ୍ତି ନବୁ କୋଉପଟେ ରହିବୁ ? ପାପିଷ୍ଠ ଦୁର୍ଯ୍ୟୋଧନ ! ଲଂପଟ ଓ ବ୍ୟଭିଋରୀ ଦୁର୍ଯ୍ୟୋଧନ !

କର୍ଣ୍ଣ: ଦୁର୍ଯ୍ୟୋଧନ ମତେ ଆଶ୍ରୟ ଦେଇଛି ମାତା । ନୀଚ ଶୂଦ୍ରକୁଳରେ ମୁଁ ଜନ୍ମ ବୋଲି ଜାଣି ସୁଦ୍ଧା ମତେ ଆଶ୍ରୟ ଦେଇଛି । ଅଧିରଥ ବୈକର୍ତ୍ତନର ପତ୍ନୀ ରୂପେ ରାଧାକୁ ସମସ୍ତେ ଜାଣନ୍ତି । ଏ ପୃଥିବୀ ଜାଣେ । ମୁଁ ମଧ ଜାଣେ । ମୁଁ

କ୍ଷତ୍ରିୟ ସଂସ୍କାର ଜାଣେନା ମାତା । କିନ୍ତୁ ଦୁର୍ଯ୍ୟୋଧନ ପାଖରେ ମୁଁ କୃତଜ୍ଞ । ମୁଁ କପଟୀ ନୁହେଁ । ଅତୀତ ଓ ଭବିଷ୍ୟତ ନଥିବା ଏକ ବିମୂଢ଼ ସୁତପୁତ୍ର । ବିଶ୍ୱାସକୁ ପାତିଚି ହାତ, ଘୁଂଚି ଯାଇଛି ବିଶ୍ୱାସ । ମୁଁ ଗୋଟେ ପଥିକ ଯାର ଲକ୍ଷ୍ୟ କୋଉଠି ସେ ଜାଣେ ନାହିଁ । ବେଳେବେଳେ ପଚାରି ଦେଇଚି ଛଳନାକୁ, ଜୀଇଁବାର କୁଛ୍ର ଇତିହାସ । ଉତ୍ତର ପାଇନି ।

କୁନ୍ତୀ: ମୁଁ ଜାଣେ କର୍ଣ୍ଣ ଏ ପର୍ଯ୍ୟନ୍ତ ତୁ ବଂଚିତ । କାରଣ ତତେ ଜନ୍ମ ଦେବା ପରେ ମଧ୍ୟ ମୁଁ ସନ୍ତାନହୀନାର ଭୂମିକାରେ ଅଭିନୟ କରିବାକୁ ପଡ଼ିଲା । କିନ୍ତୁ ପୁତ୍ର ! ବର୍ତ୍ତମାନ ସବୁ କ୍ଷତିର ଭରଣା ହେଇଯିବ । ବିଛେଦ ପରେ ମିଳନ ବଡ଼ ମଧୁର । ଫେରିଆସ କର୍ଣ୍ଣ । ତୁମ ଆଗରେ ଦୁଇଟି ସିଂହାସନ, ଗୋଟିଏ ହସ୍ତିନାର ଓ ଆଉ ଗୋଟେ ମୋ ହୃଦୟରେ ଥିବା ମାତୃତ୍ୱର ସ୍ନେହୋଜ୍ୱଳ ସିଂହାସନ । ଫେରି ଆସ ତୁମ ରାଜ୍ୟକୁ । ଅର୍ଜୁନ, ଭୀମ, ଯୁଧିଷ୍ଠିର ତୋର ଅନୁଗାମୀ ହେବେ । ମୋର ଅନୁମତି ପାଇଲେ ମଣିମୁକ୍ତା ସ୍ୱର୍ଣ୍ଣ ଅଳଂକାରରେ ବିଭୂଷିତା ହୋଇ ଦ୍ରୌପଦୀ ତୁମକୁ ସାକ୍ଷାତ କରିବ ।

କର୍ଣ୍ଣ: ଦ୍ରୌପଦୀ ? ଯନ୍ତ୍ରଣାର ଅନ୍ୟନାମ ଦ୍ରୌପଦୀ । ମୁଁ ତାକୁ ଦେଖା କରିବାକୁ ଚାହେଁନା ।

କୁନ୍ତୀ: ତୋ ଯନ୍ତ୍ରଣା ମୁଁ ଅନୁଭବ କରିପାରୁଛି ପୁତ୍ର । ମୁଁ ଜାଣେ ସେଦିନ ସ୍ୱୟଂବର ସଭାରେ ତୋର ତୀର ଠିକ୍ ଲକ୍ଷ୍ୟ ସ୍ଥଳରୁ ଚ୍ୟୁତ ହୋଇନଥାନ୍ତା । ମୁଁ ଜାଣେ ତୁ ଦ୍ରୌପଦୀର ଉପଯୁକ୍ତ ପ୍ରାର୍ଥୀ ଥିଲୁ । ବୋଧହୁଏ ଶ୍ରେଷ୍ଠତମ ପ୍ରାର୍ଥୀ । ସେଇଥିପାଇଁ, ସେଇଥିପାଇଁ ପୁତ୍ର ମୁଁ କହୁଥିଲି ପଞ୍ଚପାଣ୍ଡବଙ୍କ ପତ୍ନୀ ଦ୍ରୌପଦୀ ଧର୍ମତଃ ତୋର ମଧ୍ୟ ପତ୍ନୀ ।

କର୍ଣ୍ଣ: ଧର୍ମତଃ ! ମୁଁ ଧର୍ମ ବିଷୟରେ କୌଣସି କଥା ଶୁଣିବାକୁ ଚାହେଁନା । ମୁଁ ଦ୍ରୌପଦୀ ଉପରେ ବିଜୟ ଲାଭ କରିବାକୁ ସ୍ୱୟଂବରକୁ ଯାଇଥିଲି । କେବଳ ମୋପାଇଁ । ବିଫଳ ହେଲି କାରଣ ମୋର ଜାତି ଗୋତ୍ର ମତେ ସମର୍ଥନ କରୁନଥିଲା । ବିଫଳ ହେଲି କାରଣ ତମର ଧର୍ମ ଓ ଆଇନ ମତେ ପ୍ରତ୍ୟାଖ୍ୟାନ କରିଥିଲା । ଆଜି ମୋ ମନରେ ଦୁଃଖ ନାହିଁ । ଗ୍ଲାନି ନାହିଁ । ଆପଣମାନଙ୍କର ମଙ୍ଗଳ ହେଉ । ପାଞ୍ଚାଳୀ ସୁଖରେ ରହୁ । ଏଇଟା ହିଁ ମୋର କାମନା ।

*(ପ୍ରଚ୍ଛଦ ପଟରେ ଅଛନ୍ତି ସୂତ୍ରଧର ମାନେ । ସମବେତ କଣ୍ଠରେ ସେମାନେ କହିଲେ)*

ସମବେତ ସ୍ୱର: ଏମିତି କିଛି କର ଯେଉଁଥିରେ ଯୁଦ୍ଧ ବଂଦ ହେବ । ଦୁଇଟା ଯାକ ସତ ।

କୋଉଟା କେତେବେଳେ ସତ୍ୟ ତାହା ସ୍ଥାନ କାଳ ଓ ପାତ୍ର ଉପରେ ନିର୍ଭର କରେ । ଅହିଂସା ପରମ ଧର୍ମ ହୋଇପାରେ । ଯଦି ସମସ୍ତେ ଅହିଂସା ଆଚରଣ କରନ୍ତି । ନ ହେଲେ ଅହିଂସାର କୌଣସି ମୂଲ୍ୟ ନାହିଁ ।

କୁନ୍ତୀ: ଭୟ ଲାଗୁଚି ମତେ ! ଯଦି ଯୁଦ୍ଧ ଲାଗିଯାଏ ଏବଂ ଯଦି ପାଣ୍ଡବ ମାନଙ୍କର ଜୟ ହୁଏ... ତାହେଲେ ଭାଇ ଭାଇକୁ ହତ୍ୟା କରିବ । ଭାଇର ରକ୍ତରେ ଲାଲ ହୋଇଯିବ ହସ୍ତିନାର ସିଂହାସନ । ମୋର ଗୋଟିଏ ପୁଅ ଅସ୍ତ୍ରଧରି ଠିଆ ହୋଇଯିବ ଆଉ ଗୋଟିଏ ପୁଅ ସାମ୍ନାରେ । ଓଃ ! କି ହୃଦୟ ବିଦାରକ ଦୃଶ୍ୟ ହେବ ସେଇଟା... ! କେତେ କରୁଣ, କେତେ ବିୟୋଗାନ୍ତକ ! !

କର୍ଣ୍ଣ: ହୃଦୟ ବିଦାରକ ? ବିୟୋଗାନ୍ତକ ? ବିନା ଯୁଦ୍ଧରେ, ବିନା ରକ୍ତପାତରେ କଣ ପାଣ୍ଡବମାନଙ୍କୁ ସିଂହାସନ ମିଳିଯିବ ? ଏଇଟା କଣ କ୍ଷତ୍ରିୟ ରମଣୀର ଅଭୀପ୍ସା ? କିନ୍ତୁ ମୋର ମନେହୁଏ ରକ୍ତପାତ ହିଁ ଅନ୍ତିମ ସତ୍ୟ । ସେ ସତ୍ୟକୁ ଅସ୍ୱୀକାର କରିବାକୁ ତମେ କିଏ ?

କୁନ୍ତୀ: ମୁଁ ସତ୍ୟ ନୁହେ, ମୁଁ ମାତା । ଗୋଟାଏ ପଟେ ସତ୍ୟ । ଅନ୍ୟପଟେ ମାତା । ଏ ଦୁଇଟି ସତ୍ତା ମଧ୍ୟରେ ଲଢ଼େଇ । ଏଇ ମୁହୂର୍ତ୍ତରେ ସତ୍ୟର ପ୍ରତିଷ୍ଠା ପାଇଁ ଯୁଦ୍ଧ ଆବଶ୍ୟକ । ଶାନ୍ତିର ପ୍ରତିଷ୍ଠା ପାଇଁ ଶୁଦ୍ଧ ଆବଶ୍ୟକ ।

କର୍ଣ୍ଣ: ଯୁଦ୍ଧ ହେବ ମାତା । ଅବଶ୍ୟ ହେବ ।

କୁନ୍ତୀ: କଥାଟାକୁ ମୁଁ ଏ ପର୍ଯ୍ୟନ୍ତ ଗ୍ରହଣ କରି ପାରୁନି - ନା । ମୁଁ ଚିନ୍ତା ହିଁ କରି ପାରୁନି ଯୁଦ୍ଧରେ କର୍ଣ୍ଣ ଆଉ ଅର୍ଜୁନ ପରସ୍ପର ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବେ । ଏ କ୍ଷେତ୍ରରେ ତୁ ହିଁ ଜ୍ୟେଷ୍ଠ । ତୁ ହିଁ ବୁଦ୍ଧିମାନ । ସେଥିପାଇଁ କର୍ଣ୍ଣ ! ତତେ ଅନୁରୋଧ କରୁଛି, ତୁ ପାଣ୍ଡବ ମାନଙ୍କ ଦଳରେ ସାମିଲ ହୋଇଯା !

*(ଆଣ୍ଠୁମାଡ଼ି ବସି ପଣତ ପାତି ଦେଲେ । କର୍ଣ୍ଣ ବସି କୁନ୍ତୀଙ୍କର ପ୍ରାର୍ଥନା କରୁଥିବା ହାତ ଦୁଇଟିକୁ ଧରି ପକେଇଲେ)*

କର୍ଣ୍ଣ: ଏ ପୃଥିବୀରେ ଯୁଦ୍ଧ ଛଡ଼ା ଆଉ କିଛି ସତ୍ୟ ନାହିଁ ମାତା । ଯୁଦ୍ଧ ପରେ ଯାହା ହେଲେ ଗୋଟାଏ ଘଟିବ । ସେତେବେଳେ ମାତା କୁନ୍ତୀଙ୍କର ଅଭିଳାଷ ପୂର୍ଣ୍ଣ ହେବ । ଆପଣ ଯାଆନ୍ତୁ ।

କୁନ୍ତୀ: ତୁ ମତେ ଉପେକ୍ଷା କଲୁ କର୍ଣ୍ଣ ? ମୁଁ ତାହେଲେ ଫେରି ଯାଉଛି । କିନ୍ତୁ ଫେରିଯିବା ପୂର୍ବରୁ ଗୋଟାଏ କଥା ମୁଁ କହିଦେଉଛି । ଯୁଦ୍ଧ ପରେ ହେଉନା କାହିଁକି - ତୁ ତୋର ଭାଇମାନଙ୍କ ପାଖକୁ ଫେରି ଆସିବା କଣ ଅସମ୍ଭବ ?

ବହୁ ବର୍ଷପରେ ଭାଇମାନଙ୍କ ସାଙ୍ଗରେ ମିଳିତ ହେବାର ଆନନ୍ଦ ପାଇବା କଣ ଅସମ୍ଭବ ? (ଫେରିଯାଉଥିଲେ କୁନ୍ତୀ । ପୁଣି ଦ୍ରୁତ ଗତିରେ ଚାଲି ଆସିଲେ କର୍ଣ୍ଣଙ୍କ ପାଖକୁ) ହେଲା । ଯଦିତୁ ରାଜ୍ୟ ଚାହୁଁନୁ, ରାଜ୍ୟ ନିଅନା... ପାଞ୍ଚାଳୀର ଷଷ୍ଠପତି ହେବାକୁ ଯଦି ତୋର ଇଚ୍ଛା ନାହିଁ- ତାକୁ ଗ୍ରହଣ କରେନା, କିନ୍ତୁ ମୁଁ ତୋର ଅନୁତପ୍ତା ମାତା । ମୋ ପାଖକୁ ଫେରିଆ ।

କର୍ଣ୍ଣ: ବନ୍ଦକର ମା ! ମନେ ମନେ ମତେ ବିଦାୟ ଦିଅ । ହୃଦୟର ଅନ୍ତଃସ୍ଥଳରୁ ମତେ ବିଦାୟ ଦିଅ । ଜାଣିରଖ ମାତା, ତମେ ମୋର ଅମର୍ଯ୍ୟାଦା କରିନାହଁ । ମୁଁ ଯଦି କେବେ ସ୍ୱପ୍ନ ଦେଖେ, ସେ ମଧୁର ସ୍ୱପ୍ନରେ ମୁଁ ତମକୁ ହିଁ ଦେଖିବି ।

କୁନ୍ତୀ: ସ୍ୱପ୍ନ ? କେବଳ ସ୍ୱପ୍ନ ?

କର୍ଣ୍ଣ: ହଁ ମାତା ! ଆଉ କିଛି ଦିନ ପରେ, କିଛି ବର୍ଷ ପରେ... କୁନ୍ତୀ, କର୍ଣ୍ଣ, ଅର୍ଜୁନ... ଆମେ ସମସ୍ତେ ଇତିହାସର କୁହେଳି ଭିତରେ ଅସ୍ପଷ୍ଟ ହୋଇଯିବା... ଆମର କଥା ଲୋକଙ୍କୁ ଶୁଭିବ ନାହିଁ । ଆଗାମୀ ଯୁଗର ବଂଶଧର ମାନଙ୍କ ପାଖରେ ଆମର ଖବର ଯେମିତି ସ୍ୱପ୍ନ ଭଳି ପହଂଚିବ । ଆସନ୍ତୁ ଆମେ ସେମାନଙ୍କର ସ୍ୱପ୍ନକୁ ସାକାର କରିବା । ତମେ ଫେରିଯାଅ ତମ ପାଞ୍ଚପାଣ୍ଡବଙ୍କ ପାଖକୁ ଆଉ ମୁଁ ଫେରିଯିବି ମୋର ଏକାନ୍ତ ନିର୍ଜନତା ପାଖକୁ ।

କୁନ୍ତୀ: ଜାଣେନା, ତୋ ସାଙ୍ଗରେ ପୁନର୍ବାର ଦେଖାହେବ କି ନାଇଁ । ଜାଣେନା, ତତେ ମୁଁ ଆଉଥରେ ଏ କୋଳରେ ଧରି ପାରିବି କିନାଇଁ । ଜାଣେନା, ଭାଗ୍ୟ କଣ ଲେଖିଚି କପାଳରେ... !

*(ଏତିକି କହି ନୀରବରେ ପ୍ରସ୍ଥାନ କଲେ କୁନ୍ତୀ ନିମ୍ନ ମଂଚର ଡ଼ାହାଣ ପଟେ ପ୍ରସ୍ତର ମୂର୍ତ୍ତି, ପରି ନିର୍ବାକ ହୋଇ ଦଣ୍ଡାୟମାନ ଥିଲେ କର୍ଣ୍ଣ । ପ୍ରଚ୍ଛଦ ପଟରୁ ନାରୀ କଣ୍ଠର ଶୁଭିଲା ଆବୃତ୍ତି)*

ଆବୃତ୍ତି: ତୋଠାରୁ ବିଦାୟବେଳେ ଭୀରୁବୁକୁ ଉଠୁଚିରେ ଥରି
ପୋଛି ଦେବି ତୋର ଲୁହ ବେଲ କାଇଁ ପାଖରେ ମୋହରି ?
ଜାଣେନା ମୁଁ ଧନ ତୋ ସାଙ୍ଗରେ ଦେଖା ହବ କିନା ଆଉଥରେ
ଜାଣେନା ବାପରେ ଭାଗ୍ୟଲେଖିଛି କିସ ମୋର କପାଳରେ
ତୋ ଦେହ ବାସ୍ନା ପାଇଛିରେ ଧନ ପରାଣ ମୋ ଭରିଯାଏ
ଆଉଥରେ ଆସି ଦେଖିବା ପାଇଁକି ଇଚ୍ଛା ମୋର ପୁଣି ହୁଏ ।

*(ଏହି ସମବେତ ଆବୃତ୍ତି ଭିତରେ କୁନ୍ତୀଙ୍କର ସ୍ୱର ଆଗରେ ଥିବ ଏବଂ କର୍ଣ୍ଣ 'ମା' ବୋଲି ଚିତ୍କାର କରି କାନ୍ଦୁଥିବେ । ତାପରେ ଅନ୍ଧାର)* ●●

କାନୀନ (କୁମାରୀ ମାତାର ସନ୍ତାନ) ଏକ ପୌରାଣିକ ନାଟକ ନୁହେ, ଗୋଟିଏ ପୁରାକଳ୍ପର ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନ ଓ ନାଟ୍ୟାୟନ। ଏହାର ସଂଯୋଜନା ଏବଂ ଚରିତ୍ରାୟନ ଉତ୍କଳୀୟ ତଥା ଭାରତୀୟ ନାଟ୍ୟ ପ୍ରେକ୍ଷାରେ ସଂପୂର୍ଣ୍ଣ ନୂତନ ବାଙ୍ମୟ ନିର୍ମାଣ। ଏଠାରେ ବର୍ଣ୍ଣିତ କୁନ୍ତୀଙ୍କ ମାତୃତ୍ୱ ପ୍ରସଙ୍ଗର ନାଟ୍ୟାୟନ ଦ୍ୱାପର ସମାଜର ଏକ ବିଦ୍ୱେଷ, ପରମ୍ପରା ନୁହେ। ପୁରାକଳ୍ପର ପୁନଃନିର୍ମାଣ ବେଳେ ଏହା ମାତା ଓ ସନ୍ତାନ ମଧ୍ୟରେ ସୃଷ୍ଟି କରିଛି ଏକ ଅପୂରଣୀୟ ଶୂନ୍ୟସ୍ଥାନ।

ଈ ଲେଖାଲେଖି

